# ଆମ ଦେଶର ପ୍ରଥମ

# ମହିଳା ପ୍ରଧାନମନ୍ତ୍ରୀ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
ଓଡ଼ିଶା, ଭୁବନେଶ୍ୱର

# ଆମ ଦେଶର ପ୍ରଥମ ମହିଳା ପ୍ରଧାନମନ୍ତ୍ରୀ

| | |
|---|---|
| ଲେଖକ | **ଡା. ମନସା ଦାସ** |
| ପ୍ରଥମ ସଂସ୍କରଣ | ୧୯୯୭ |
| ପ୍ରକାଶକ | ଡକ୍ଟର ବିମଳେନ୍ଦୁ ମହାନ୍ତି<br>ନିର୍ଦ୍ଦେଶକ,<br>**ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା**<br>ଜନଶିକ୍ଷା ଭବନ, ୟୁନିଟ-୫, ଭୁବନେଶ୍ୱର-୧ |
| ମୁଦ୍ରଣ ସଂଖ୍ୟା | ୨,୦୦୦ |
| ପ୍ରକାଶନ ସଂଖ୍ୟା | ଏସ୍. ଆର. ସି.-୨୧୮ - ୧୯/୯୭ |
| ମୁଦ୍ରଣ | ନିସ୍ୱାସ, ୩-ଚନ୍ଦ୍ରଶେଖରପୁର, ଭୁବନେଶ୍ୱର-୭୫୧୦୧୬ |
| ମୂଲ୍ୟ | ପାଞ୍ଚ ଟଙ୍କା ମାତ୍ର |

## AAMA DESHARA PRATHAMA MAHILA PRADHANAMANTRI

| | |
|---|---|
| Author | **Dr. Manasa Das** |
| 1st Edition | 1997 |
| Publisher | Dr. Bimalendu Mohanty<br>Director,<br>**State Resource Centre for Adult Education, Orissa**<br>Janasiksha Bhawan, Unit - V,<br>Bhubaneswar - 751001 |
| No. of Copies Printed | 2,000 |
| Publication No. : | SRC - 218 - 19/97 |
| Printed at | NISWASS, 3-Chandrasekharpur,<br>Bhubaneswar - 751016 |
| Price | Rupees Five only |

ଚାରିବର୍ଷର ଛୋଟ ଝିଅଟିଏ । କଣ୍ଢେଇ ଧରି ଖେଳିବାରେ ତା'ର ଭାରି ସଉକ । ସେଥିପାଇଁ ନାନା ପ୍ରକାରର କଣ୍ଢେଇରେ ତା କଣ୍ଢେଇ ଘର ପୂରିଥାଏ । ଏଇ କଣ୍ଢେଇଗୁଡ଼ିକ ମଧ୍ୟରେ କେତେକ ଦେଶୀ ଓ କେତେକ ବିଦେଶୀ ବେଶ ପୋଷାକ ପିନ୍ଧିଥିବା କଣ୍ଢେଇ ଥାଆନ୍ତି । ଦେଶୀ କଣ୍ଢେଇ ମଧ୍ୟରେ ପୁଣି ଥାଆନ୍ତି ରାଜା, ରାଣୀ, ବର, କନ୍ୟା, ଚାକର, ପୂଜାରୀ ଆଦି କେତେ ରକମର । ସେହିପରି ବିଦେଶୀ କଣ୍ଢେଇ ମଧ୍ୟରେ ଥାଆନ୍ତି ପୁଲିସ, ସିପାହୀ ଆଉ ସାହେବ ସାହେବାଣୀ । ଅଧିକାଂଶ ସମୟ ଝିଅଟି ଏହି କଣ୍ଢେଇମାନଙ୍କ ସହିତ ଖେଳରେ ମାତିଥାଏ । କାରଣ ଏହିମାନେ ହିଁ ତା'ର ସାଙ୍ଗ ସାଥୀ ।

ଦିନେ ସେ ଏହି କଣ୍ଢେଇ ଖେଳ ଖେଳି ଅନ୍ୟମାନଙ୍କୁ ଚମକାଇ ଦେଇଥିଲା । ସେଦିନ ସେ ଅନ୍ୟ ଦିନମାନଙ୍କ ପରି କଣ୍ଢେଇ ଘରକୁ ଯାଇଥିଲା ଖେଳିବା ପାଇଁ । କଣ୍ଢେଇ ଘରେ ପଶି ଆଗ ସେ ଘରର ଦୁଆର ମୁହଁରେ ଗୋଟିଏ ତ୍ରିରଙ୍ଗା ପତାକା ଲଗାଇ ଦେଇଥିଲା । ଘର ଭିତରେ ଥିବା ସବୁ ଦେଶୀ କଣ୍ଢେଇମାନଙ୍କ ହାତରେ ମଧ ଧରାଇଥିଲା ଗୋଟିଏ ଗୋଟିଏ ତ୍ରିରଙ୍ଗା ପତାକା । ଏହି ଦେଶୀ କଣ୍ଢେଇମାନଙ୍କୁ ପୁଣି ଘେରି ରହିଥିଲେ ହାତରେ ବନ୍ଧୁକ ଧରିଥିବା ବିଦେଶୀ କଣ୍ଢେଇମାନେ । ଏହାପରେ ସେହି ଟିକି ଝିଅଟି ଦେଶୀ କଣ୍ଢେଇମାନଙ୍କୁ ଶୁଣାଇ

କହିଥିଲା - ‘‘ତୁମେମାନେ ଭୁଲିଯାଅ ନାହିଁ ଯେ, ତୁମେ ସବୁ ଜଣେ ଜଣେ ସତ୍ୟାଗ୍ରହୀ । ଆଗରେ ଛିଡ଼ା ହୋଇଥିବା ବନ୍ଧୁକଧାରୀ ପୁଲିସମାନଙ୍କୁ ତୁମେମାନେ ମୋଟେ ଭୟ କରନାହିଁ । ଆଗକୁ ମାଡ଼ି ଚାଲ ।’’ ସତେ ଯେପରି ଝିଅଟି ସେହି ଦେଶୀ କଣ୍ଢେଇମାନଙ୍କର ନେତ୍ରୀ । ପୁଣି ଝିଅଟି କିଛି ସମୟ ପରେ ସେହି କଣ୍ଢେଇମାନଙ୍କୁ ପରସ୍ପରର ନିକଟକୁ ଆଣି ପାଟି କରି ଉଠିଥିଲା - ‘‘ଭାରତମାତା କି ଜୟ । ହିନ୍ଦୁ - ମୁସଲମାନ ଏକତା ଜିନ୍ଦାବାଦ । ମହାତ୍ମାଗାନ୍ଧୀ କି ଜୟ ।’’ ଏହି ଧ୍ୱନି ଦେବା ସହିତ ସେ ଦେଶୀ କଣ୍ଢେଇମାନଙ୍କୁ ଖେଳରେ ବିଜୟୀ କରାଇଥିଲା ଓ ଆନନ୍ଦରେ ନାଚି ଉଠିଥିଲା ।

ଏ ଯେଉଁ ସମୟର କଥା କୁହାଯାଉଛି, ସେ ସମୟରେ ଭାରତ ଥିଲା ଇଂରେଜମାନଙ୍କ ଅଧୀନରେ । ତେଣୁ ଏପ୍ରକାର କଣ୍ଢେଇ ଖେଳ ସେ ଝିଅଟିର ପରିବାରକୁ ଆଶ୍ଚର୍ଯ୍ୟ କରିଦେଇଥିଲା । ଖାଲି ସେତିକି ନୁହେଁ । ଗୋରା ଜିଲ୍ଲାମାଜିଷ୍ଟ୍ରେଟ ମଧ୍ୟ ଏଥିରେ ଅସନ୍ତୁଷ୍ଟ ହୋଇଥିଲେ । ସେତେବେଳେ ଚହଳ ସୃଷ୍ଟି କରିଥିବା ଏହି ଛୋଟ ଝିଅଟି ପରବର୍ତ୍ତୀ କାଳରେ ଇନ୍ଦିରାଗାନ୍ଧୀ ନାମରେ ସାରାସଂସାରରେ ଜଣା ଶୁଣା ହୋଇଥିଲେ ।

ସେ ଆମ ଦେଶର ପ୍ରଥମ ମହିଳା ପ୍ରଧାନମନ୍ତ୍ରୀ ।

ଇନ୍ଦିରା ଗାନ୍ଧୀଙ୍କର ପୂରା ନାମ ହେଉଛି ଇନ୍ଦିରା ପ୍ରିୟଦର୍ଶିନୀ । ସେ ଭାରତର ବିଖ୍ୟାତ ସହର ଏହ୍ଲାବାଦର ‘ଆନନ୍ଦ

ଭବନ'କୁ ଆନନ୍ଦ ମୁଖରିତ କରି ୧୯୧୭ ମସିହା ନଭେମ୍ବର ମାସ ୧୯ ତାରିଖରେ ଜନ୍ମଗ୍ରହଣ କରିଥିଲେ । ପଣ୍ଡିତ ଜବାହର ଲାଲ ନେହେରୁ ଓ କମଳା ନେହେରୁଙ୍କର ସେ ଥିଲେ ଗୋଟିଏ ବୋଲି ଅଲିଅଳୀ ଝିଅ । ବାପାମାଆ ଓ ପରିବାରର ଅନ୍ୟମାନେ ଝିଅଟିର ସୁନ୍ଦର ସଜଫୁଟା ଗୋଲାପ ଫୁଲ ପରି ଗୁଲୁଗୁଲିଆ ମୁହଁକୁ ଦେଖି ଖୁସି ହୋଇଯାଇଥିଲେ । ସେମାନେ ଅତି ସ୍ନେହରେ ତା'ର ନାଁ ଦେଇଥିଲେ ଇନ୍ଦୁ । 'ଇନ୍ଦୁ' ର ଅର୍ଥ ଜହ୍ନ । ଜହ୍ନ ଯେପରି ଅନ୍ଧରକୁ ଦୂର କରି ସମସ୍ତଙ୍କୁ ଆନନ୍ଦ ଦିଏ, ସେହିପରି ଇନ୍ଦୁ ଯେ ଅନ୍ୟକୁ ଆନନ୍ଦ ଦେବ, ତାହା ତା'ର ପିଲାଦିନର କଣ୍ଢେଇ ଖେଳରୁ ହିଁ ଜଣାଯାଇଥିଲା ।

## ନେହେରୁ ପରିବାର

ଇନ୍ଦିରାଙ୍କ ପରିବାରର ମୂଳ ବାସସ୍ଥାନ ଥିଲା କାଶ୍ମୀର । ସେମାନେ ଥିଲେ କୁଳୀନ ବ୍ରାହ୍ମଣ । ତାଙ୍କ ପରିବାରର ଜଣେ ପୂର୍ବପୁରୁଷ ହେଉଛନ୍ତି ରାଜ କାଉଲ । ସେ ସଂସ୍କୃତ ଭାଷା ଓ ସାହିତ୍ୟରେ ସୁପଣ୍ଡିତ ଥିଲେ । ଥରେ ମୋଗଲ ସମ୍ରାଟ ଫାରୁକ୍-ସିଅର କାଶ୍ମୀର ବୁଲିବାକୁ ଯାଇଥିଲେ । ସେଠାରେ ସେ ରାଜ କାଉଲଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ଦିଲ୍ଲୀ ଡ଼କାଇନେଲେ ।

ଏହାପରେ ରାଜ କାଉଲ ସପରିବାର କାଶ୍ମୀର ଛାଡ଼ି ଦିଲ୍ଲୀରେ ରହିବାକୁ ଲାଗିଲେ । ଦିଲ୍ଲୀରେ ସେମାନେ ରହିବା ପାଇଁ

ମୋଗଲ ସମ୍ରାଟ ସେମାନଙ୍କୁ ଏକ କେନାଲ କୂଳରେ ଗୋଟିଏ ସୁନ୍ଦର ଘର ଯୋଗାଇ ଦେଇଥିଲେ । କେନାଲକୁ ସାଧାରଣତଃ ହିନ୍ଦୀ ଭାଷାରେ 'ନହର' କୁହାଯାଏ । ତେଣୁ ନହର କୂଳରେ ରାଜ କାଉଲଙ୍କ ପରିବାର ବସବାସ କରିବାରୁ ସେମାନଙ୍କୁ 'କାଉଲ ନେହେରୁ' ବୋଲି ଲୋକମାନେ ଡାକିଲେ । ଧୀରେ ଧୀରେ ସେମାନେ କେବଳ 'ନେହେରୁ' ନାମରେ ଜଣାଶୁଣା ହୋଇଉଠିଲେ ।

ଏହି ପରିବାରର ମୋତିଲାଲ ଥିଲେ ଜଣେ ନାଉଁଆ ଲୋକ । ସେ ଥିଲେ ଇନ୍ଦିରାଙ୍କର ଜେଜେ ବାପା । ସେ ଏହ୍ଲାବାଦ କୋର୍ଟରେ ଓକିଲାତି କରୁଥିଲେ । ଅତି କମ୍ ବୟସରୁ ଇଂରେଜୀ ଭାଷାରେ ସେ ଦକ୍ଷତା ଲାଭ କରିଥିଲେ । ଏହା ସହିତ ପାର୍ସୀ ଓ ସଂସ୍କୃତରେ ମଧ୍ୟ ତାଙ୍କର ଭଲ ଜ୍ଞାନ ଥିଲା । ସେ ଥିଲେ ଅତ୍ୟନ୍ତ ଦୃଢ଼ମନା ଓ ପରିଶ୍ରମୀ । ସେଥିପାଇଁ ସେ କମ୍ ଦିନରେ ଖୁବ୍ ନାମ କମାଇଥିଲେ । ପ୍ରଚୁର ଅର୍ଥ ମଧ୍ୟ ରୋଜଗାର କରିଥିଲେ । ତାଙ୍କୁ ସମସ୍ତେ ଜଣେ ଧନୀ ଲୋକ ଭାବେ ଜାଣୁଥିଲେ । ସେ ସ୍ୱରୂପାରାଣୀଙ୍କୁ ବିବାହ କରିଥିଲେ । ଜବାହର ଲାଲ ହେଉଛନ୍ତି ଏମାନଙ୍କର ବଡ଼ ପୁଅ ।

**ଇନ୍ଦିରାଙ୍କ ପିଲାଦିନ**

ମୋତିଲାଲ ଜବାହରଙ୍କୁ ଉଚ୍ଚ ଶିକ୍ଷା ପାଇଁ ବିଲାତ ପଠାଇଥିଲେ । ୧୯୧୬ ମସିହାରେ କମଳାଙ୍କ ସହିତ ତାଙ୍କର

ବିବାହ ହୋଇଥିଲା । କମଳା କାଉଲ ଥିଲେ ରକ୍ଷଣଶୀଳା କାଶ୍ମିରୀ କନ୍ୟା । ସେ ଥିଲେ ସୁନ୍ଦରୀ ଆଉ ବୁଦ୍ଧିମତୀ । ବିବାହର ବର୍ଷକ ପରେ ଏକମାତ୍ର କନ୍ୟା ଇନ୍ଦିରାଙ୍କର ଜନ୍ମ ହୋଇଥିଲା ।

ଝିଅଟିଏ ହୋଇଛି ଶୁଣି ଜବାହରଙ୍କ ମାଆ ସ୍ୱରୂପାରାଣୀ କହିଥିଲେ - ''ଝିଅଟିଏ ହେଲା ! ପୁଅ ହେଲା ନାହିଁ ?'' ହୁଏତ ସେ ପୁଅଟିଏ ହୋଇଥିଲେ ଅଧିକ ଖୁସି ହୋଇଥାନ୍ତେ । କିନ୍ତୁ ମୋତିଲାଲ ପୁଅ ଝିଅ ଭିତରେ କିଛି ଫରକ ଦେଖୁ ନଥିଲେ । ତେଣୁ ସେ ଖୁସି ହୋଇ ହସି ହସି କହିଥିଲେ - ''ତୁମେ ଦେଖିବ ରୁହ, ଏଇ ଝିଅ ଦିନେ ହଜାର ହଜାର ପୁଅଙ୍କୁ ବଳିଯିବ ।'' ତାଙ୍କର ଭବିଷ୍ୟତ ବାଣୀ ସତ ହୋଇଥିଲା । ଇନ୍ଦିରା ଦିନେ ଦେଶର ପ୍ରଧାନମନ୍ତ୍ରୀ ହୋଇଥିଲେ । ସାରା ପୃଥିବୀରେ ତାଙ୍କ ନାଁ ପ୍ରଚାରିତ ହୋଇଥିଲା ।

ଦିନେ ସରୋଜିନୀ ନାଇଡୁ ଇନ୍ଦିରାଙ୍କୁ ଦେଖିବାକୁ ଆସିଲେ । ସେ ଇନ୍ଦିରାଙ୍କ ଗମ୍ଭୀର ମୁହଁ ଆଡ଼କୁ ଅନାଇ କହିଥିଲେ - ''ମୁଁ ଏପରି ଅଭିମାନୀ ପିଲାଟିଏ କେବେ ଦେଖିନାହିଁ ।'' ପୂର୍ବରୁ ଝିଅ ହେବା ଖବର ପାଇ ସେ ''ଏଇ ଝିଅଟି ଭାରତର ଆତ୍ମା'' ବୋଲି ଜବାହରଙ୍କ ନିକଟକୁ ଏକ ଚିଠିରେ ଲେଖିଥିଲେ ।

ଇନ୍ଦିରା ଜନ୍ମ ହେଲା ବେଳକୁ ଭାରତର ରାଜନୈତିକ ଅବସ୍ଥା ଭଲ ନ ଥିଲା । ଇଂରେଜମାନେ ଦେଶବାସୀଙ୍କୁ ନାନା ପ୍ରକାର

ଶୋଷଣ କରୁଥିଲେ । ଅନ୍ୟାୟ, ଅତ୍ୟାଚାର ମଧ୍ୟ କରୁଥିଲେ । ଭାରତକୁ ବାଣିଜ୍ୟ କରିବାକୁ ଆସି ଦେଶର ପୂରା ମାଲିକ ପାଲଟି ଯାଇଥିଲେ । ଫଳରେ ଭାରତୀୟମାନେ ଏକଜୁଟ ହୋଇ ଦେଶକୁ ମୁକ୍ତ କରିବା ନିମନ୍ତେ ଲଢ଼େଇ ଆରମ୍ଭ କରିଦେଇଥିଲେ । ଇନ୍ଦିରାଙ୍କ ବାପା ଓ ଜେଜେବାପା ମଧ୍ୟ ଓକିଲାତି ଛାଡ଼ି ଦେଇ ସେତେବେଳକୁ ରାଜନୀତିରେ ଯୋଗ ଦେଇ ସାରିଥିଲେ । ମୋତିଲାଲଙ୍କ ଘର 'ଆନନ୍ଦ ଭବନ'କୁ ସ୍ୱାଧୀନତା ସଂଗ୍ରାମୀମାନେ ନିୟମିତ ଯିବା ଆସିବା କରୁଥିଲେ । ରାଜନୀତି ବିଷୟରେ ଆଲୋଚନା କରୁଥିଲେ । ଇଂରେଜମାନଙ୍କ କବଳରୁ କିପରି ଦେଶକୁ ରକ୍ଷା କରାଯିବ, ସେ ବିଷୟରେ ଉପାୟମାନ ଠିକ୍ କରୁଥିଲେ ।

ଇନ୍ଦିରା ଅତି କମ୍ ବୟସରୁ ଜେଜେବାପା ମୋତିଲାଲଙ୍କ କୋଳରେ ବସି ସେସବୁ ଆଲୋଚନା ଶୁଣୁଥିଲେ । ସବୁ କଥା ବୁଝି ପାରୁ ନ ଥିଲେ ବି ସେମାନଙ୍କ ଗତିବିଧିକୁ ଲକ୍ଷ୍ୟ କରୁଥିଲେ । ମହାତ୍ମାଗାନ୍ଧୀ, ପଣ୍ଡିତ ମଦନ ମୋହନ ମାଳବ୍ୟ, ସରୋଜିନୀ ନାଇଡୁ, ଆନିବେଶାନ୍ତ ଆଦି ବହୁ ବଡ଼ ବଡ଼ ଜାତୀୟ ନେତାଙ୍କ ସହିତ ସେ ପ୍ରତିଦିନ ମିଶୁଥିଲେ । ଏହିପରି ପରିବେଶ ଶିଶୁ ଇନ୍ଦିରାଙ୍କ କୋମଳ ମନରେ ଦେଶ ପ୍ରେମ ଭାବ ସୃଷ୍ଟି କରୁଥିଲା । ତେଣୁ ଘରେ କେହି ନ ଥିଲା ବେଳେ ସେ ଚାକରମାନଙ୍କୁ ଡାକି ନିଜେ ଗୋଟିଏ ଟେବୁଲ ଉପରେ ଛିଡ଼ା ହୋଇଯାଉଥିଲେ । ତା'ପରେ ସେମାନଙ୍କ ଆଗରେ ଭାଷଣ ଦେଉଥିଲେ ।

ମୋତିଲାଲ ଓ ଜବାହର ପ୍ରାୟ ଜେଲ୍ ଯାଉଥିଲେ । ଇନ୍ଦିରା ସେମାନଙ୍କ ଟାଣୁଆ ମନୋବଳ ଓ ସାହସକୁ ଦେଖୁଥିଲେ । ସେ ମଧ୍ୟ ସେମାନଙ୍କ ପରି ପିଲାଦିନରୁ ସାହସୀ ଓ ନିର୍ଭୀକ ହୋଇଯାଇଥିଲେ ।

ତାଙ୍କୁ ଛଅ ବର୍ଷ ବୟସ ହୋଇଥାଏ । ଏତିକିବେଳେ ମହାତ୍ମାଗାନ୍ଧୀ 'କାଟିପିନ୍ଧ' 'କୁଟିଖାଅ' ବୋଲି ଲୋକଙ୍କୁ ବୁଝାଉଥିଲେ । ଏଥିରେ ପ୍ରଭାବିତ ହୋଇ ଇନ୍ଦିରା 'ଭାରତୀୟ ଚରଖା ସଂଘ'ରେ ଯୋଗଦେଇଥିଲେ । ସେଠାରେ ଅନ୍ୟମାନଙ୍କ ସହିତ ସେ ମଧ୍ୟ ସୂତାକଟା ଆରମ୍ଭ କରିଥିଲେ । ମହାତ୍ମାଗାନ୍ଧୀ ଏହା ଦେଖି ତାଙ୍କ ଉପରେ ଅତି ଖୁସି ହୋଇଯାଇଥିଲେ ।

ଇନ୍ଦିରାଙ୍କ ପିଲାଦିନର ମନେ ରଖିଲା ଭଳି ଗୋଟିଏ ଘଟଣା । ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଦେଶର ଚାରିଆଡ଼େ ବିଦେଶୀ ଜିନିଷ ବର୍ଜନ ଆନ୍ଦୋଳନ ଚାଲିଥାଏ । ଲୋକେ ବିଦେଶୀ ଜିନିଷକୁ ପୋଡ଼ି ପକାଉ ଥାଆନ୍ତି । ଇନ୍ଦିରାଙ୍କ ବାପା, ମାଆ, ଜେଜେବାପା ଏବଂ ଦୁଇ ପିଉସୀ ବିଜୟଲକ୍ଷ୍ମୀ ପଣ୍ଡିତ ଓ କୃଷ୍ଣା ହାଠୀସିଂହ ମଧ୍ୟ ଏହି ଆନ୍ଦୋଳନରେ ଯୋଗ ଦେଇଥିଲେ । ସେମାନେ ବିଦେଶରୁ ଆମଦାନୀ ହେଉଥିବା ଦାମିକା କଳତିଆରି ଲୁଗା ଛାଡ଼ି ଆମ ଦେଶର ହାତ ତିଆରି ସାଧାରଣ ଖଦି ଲୁଗା ପିନ୍ଧୁଥିଲେ । ଇନ୍ଦିରା ଏସବୁ ଦେଖି ଆଶ୍ଚର୍ଯ୍ୟ ହୋଇଯାଉଥିଲେ । ସେ ଛୋଟ ପିଲାଥିଲେ

ବି ଏହାର ମହତ୍ତ୍ୱକୁ ବୁଝି ପାରୁଥିଲେ । ତେଣୁ ଘର ଲୋକଙ୍କ ସହିତ ସେ ମଧ୍ୟ ଖଦି ପୋଷାକ ପିନ୍ଧିବା ଆରମ୍ଭ କରିଦେଇଥିଲେ ।

ଦିନେ ତାଙ୍କର ଜଣେ ସଂପର୍କୀୟା ମହିଳା ତାଙ୍କ ଘରକୁ ବୁଲି ଆସିଲେ । ସେ ଇନ୍ଦିରାଙ୍କ ପାଇଁ ସାଙ୍ଗରେ ସୁନ୍ଦର ବିଦେଶୀ ଲୁଗା ଆଣିଥିଲେ । ଇନ୍ଦିରା ତାହାକୁ ରଖିବେ ନାହିଁ ବୋଲି କହିଲେ । ଇନ୍ଦିରାଙ୍କର ଏପରି ବୁଦ୍ଧି ଦେଖି ଘର ଲୋକେ ବହୁତ ଖୁସି ହୋଇଥିଲେ । କିନ୍ତୁ ସେହି ମହିଳା ଜଣକ ଏଥିରେ ନିଜକୁ ଖୁବ୍ ଅପମାନିତ ମନେ କଲେ । ସେ ଇନ୍ଦିରାକୁ କ'ଣ କହିବେ ଭାବୁଛନ୍ତି । ଦେଖିଲେ ଇନ୍ଦିରା ଗୋଟିଏ ସୁନ୍ଦର ବିଦେଶୀ କଣ୍ଢେଇ ହାତରେ ଧରିଛି । ସଙ୍ଗେ ସଙ୍ଗେ ସେ ଥଟ୍ଟା କରି ତାକୁ କହିଲେ - "ତୁ ବିଦେଶୀ ପୋଷାକ ପିନ୍ଧିବୁ ନାହିଁ ବୋଲିତ ମନକରୁଛୁ ହେଲେ ବିଦେଶୀ କଣ୍ଢେଇ ଧରି ଖେଳୁଛୁ କାହିଁକି ?" ଏହି କଥା ଇନ୍ଦିରାଙ୍କୁ ବହୁତ ବାଧିଲା । ସେ କିନ୍ତୁ କଣ୍ଢେଇଟିକୁ ଭାରି ଭଲ ପାଉଥିଲେ । କ'ଣ କରିବେ ? କିଛି ଠିକ୍ କରିପାରିଲେ ନାହିଁ । ହଠାତ୍ ଦିନେ କାହାକୁ କିଛି ନକହି ସେ କଣ୍ଢେଇରେ ନିଆଁ ଲଗାଇ ପୋଡ଼ିଦେଲେ । ପିଲାଦିନର ଏପରି କାମ ତାଙ୍କ ମନୋବଳକୁ ଟାଣ କରିଥିଲା ।

ଇନ୍ଦିରାଙ୍କ ପାଠ ପଢ଼ିବାରେ ବହୁତ ଡେରି ହୋଇଥିଲା । ତାଙ୍କ ବାପା ଓ ଜେଜେବାପା ତ ରାଜନୀତିରେ ମାତିଥିଲେ । ବହୁ ସମୟ ଜେଲ୍‌ରେ କଟାଉଥିଲେ । ସେଥିପାଇଁ ସେମାନେ ତାଙ୍କ ପାଠ

ପଢ଼ା ପ୍ରତି ଧ୍ୟାନ ଦେଇ ପାରୁନଥିଲେ । ଇନ୍ଦିରା ଘରେ ମାଆଙ୍କ ଠାରୁ ଯାହା ଶିଖୁଥିଲେ ।

**ଆଶ୍ରମରେ କିଛିଦିନ**

୧୯୨୧ ମସିହା କଥା । ସେତେବେଳେ କଂଗ୍ରେସ କର୍ମୀଭାବରେ ମୋତିଲାଲ ଓ ଜବାହରଲାଲ କେତେକ ପ୍ରଚାରପତ୍ର ବାଣ୍ଟିଥିଲେ । ଏହି ପ୍ରଚାର ପତ୍ରରେ ସରକାର ବିରୋଧୀ ଲେଖାମାନ ଥିଲା । ତେଣୁ ଇଂରେଜ ସରକାର ସେ ଦୁହିଁଙ୍କୁ ଧରିନେଇ ଜେଲରେ ଭର୍ତ୍ତି କରି ଦେଇଥିଲେ । ଘରେ ଇନ୍ଦିରା ଓ କମଳା ଏକୁଟିଆ ରହିଗଲେ । ସେମାନଙ୍କର ଦାୟିତ୍ୱ ନେବାକୁ ଆଉ କେହି ପୁରୁଷ ଲୋକ ନଥିଲେ । ମହାତ୍ମାଗାନ୍ଧୀ ସେମାନଙ୍କୁ ତାଙ୍କ ସହିତ ସାବରମତୀ ଆଶ୍ରମକୁ ଯିବାକୁ କହିଲେ । କମଳା ତାଙ୍କ କଥାମାନି ଇନ୍ଦିରାଙ୍କୁ ନେଇ ସାବରମତୀ ଆଶ୍ରମକୁ ଚାଲିଯାଇଥିଲେ ।

ଆଶ୍ରମର କଠୋର ନୀତି ନିୟମ ସହିତ ସେମାନେ ପରିଚିତ ନଥିଲେ । ରାତି ଚାରିଟାରୁ ଉଠିବା, ଘଣ୍ଟା ଘଣ୍ଟା ଧରି ପ୍ରାର୍ଥନା କରିବା, ବିଭିନ୍ନ ବିଷୟରେ ଆଲୋଚନା କରିବା, ନିଜ ହାତରେ ଲୁଗାପଟା ସଫା କରିବା, ବାସନ ମାଜିବା, ପାଇଖାନା ସଫା କରିବା ଆଦି କାମ ଆଶ୍ରମବାସୀମାନେ କରୁଥିଲେ । ଏହା ସହିତ ବିନା ଲୁଣରେ ତରକାରୀ ଖାଇବା ନିୟମ ମଧ୍ୟ ଥିଲା ।

ଇନ୍ଦିରା ଓ କମଳାଙ୍କୁ ଏହା ପ୍ରଥମେ କଷ୍ଟ ଲାଗିଥିଲା । ମାତ୍ର ଅଳ୍ପ ଦିନ ମଧ୍ୟରେ ସେମାନେ ନିଜକୁ ଆଶ୍ରମ ଜୀବନ ସହିତ ମିଶାଇ ଦେଇଥିଲେ । ଇନ୍ଦିରା ଆନନ୍ଦ ଭବନରେ ଚାକର ବାକରଙ୍କ ମେଳରେ ରହୁଥିଲେ । ସେ ବି ସହଜରେ ଆଶ୍ରମର ଏହି ନୀତି ନିୟମକୁ ପାଳନ କରିଥିଲେ । ତାଙ୍କୁ ଏହା ଜୀବନରେ ଯେ କୌଣସି ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ସାହସ ଯୋଗାଇଥିଲା । ଏହି ଆଶ୍ରମରେ ସେ ମହାତ୍ମାଗାନ୍ଧୀଙ୍କ ପାଖରୁ ବହୁ କଥା ଶିଖିଥିଲେ । କିଛିଦିନ ଆଶ୍ରମରେ ରହିବା ପରେ ଦେଶର ପରିସ୍ଥିତି ଶାନ୍ତ ହେବାରୁ ସେମାନେ ପୁଣି ଆନନ୍ଦ ଭବନକୁ ଫେରି ଆସିଥିଲେ ।

**ପାଠପଢ଼ା**

୧୯୨୩ ମସିହାରେ ଇନ୍ଦିରା ଏହ୍ଲାବାଦର ସେଣ୍ଟ ସେସିଲିଆ ହାଇସ୍କୁଲରେ ନାମ ଲେଖାଇଥିଲେ । ଏହି ସ୍କୁଲ ଜଣେ ବିଦେଶୀ ମହିଳାଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ଏହିଠାରେ ସେ ବହୁ ବିଦେଶୀ ସାହିତ୍ୟ ପଢ଼ିବାର ସୁଯୋଗ ପାଇଥିଲେ । ଦିନେ ସ୍କୁଲରେ ଶିକ୍ଷକ ତାଙ୍କୁ ପଚାରିଲେ – "ଭବିଷ୍ୟତରେ ତୁମେ କଣ ହେବାକୁ ଚାହୁଁଛ ?" ସେତେବେଳେ ସେ କହିଥିଲେ – "ମୁଁ ଜୋଆନ୍ ଅଫ ଆର୍କଙ୍କ ପରି ଜଣେ ସାହସୀ ଝିଅ ହେବାକୁ ଚାହୁଁଛି ।"

ଇନ୍ଦିରାଙ୍କ ପାଠ ପଢ଼ାରେ ବହୁ ଅସୁବିଧା ସୃଷ୍ଟି ହୋଇଥିଲା । ତେବେ ବି ସେ ଭଲ ପଢ଼ୁଥିଲେ । ଅଳ୍ପ ବୟସରୁ ନାଚ ଶିଖିବା,

ଚିତ୍ର ଆଙ୍କିବା ଆଦି ପ୍ରତି ତାଙ୍କର ଖୁବ୍ ଆଗ୍ରହ ଥିଲା । ତେଣୁ ପାଠ ପଢ଼ିବା ସହିତ ବେଳେବେଳେ ସେ ନାଚ ଶିଖୁଥିଲେ ଓ ଚିତ୍ର ମଧ୍ୟ ଆଙ୍କୁଥିଲେ ।

ବଡ଼ ହେବା ସଙ୍ଗେ ସଙ୍ଗେ ଇନ୍ଦିରା ଜଣେ କଂଗ୍ରେସକର୍ମୀ ଭାବରେ କାର୍ଯ୍ୟ କରିବା ଆରମ୍ଭ କରିଥିଲେ । କିନ୍ତୁ ସେ କଂଗ୍ରେସର ଜଣେ ସଭ୍ୟା ଭାବରେ ଗଣା ହେଉ ନଥିଲେ । ସେତେବେଳକୁ ତାଙ୍କ ପରିବାରର ସମସ୍ତ ଲୋକ କଂଗ୍ରେସରେ ସକ୍ରିୟ ଅଂଶ ଗ୍ରହଣ କରିସାରିଥାନ୍ତି । ତାଙ୍କମାଆ କମଳା ମଧ୍ୟ ଜବାହରଲାଲ ଜେଲରେ ରହୁଥିବା ସମୟତକ ଲଢୁଆ କର୍ମୀମାନଙ୍କୁ ସାହାଯ୍ୟ କରୁଥାନ୍ତି ।

ଇନ୍ଦିରା ଠିକ୍ କଲେ କଂଗ୍ରେସର ଜଣେ ସଭ୍ୟ ହେବେ । ସେଥିପାଇଁ ଦିନେ ସେ କଂଗ୍ରେସ କର୍ତ୍ତୃପକ୍ଷଙ୍କୁ ଅନୁରୋଧ କଲେ । ସେତେବେଳକୁ ତାଙ୍କର ବୟସ ମାତ୍ର ବାରବର୍ଷ । ଏତେ କମ୍ ବୟସର ଝିଅକୁ ସେମାନେ କଂଗ୍ରେସର ସଭ୍ୟ ଭାବରେ ଗ୍ରହଣ କରିପାରିବେ ନାହିଁ ବୋଲି ମନା କରିଦେଲେ । ଏଥିରେ ଦୁଃଖିତ ହୋଇ ଇନ୍ଦିରା ତାଙ୍କର କେତେକ ସାଙ୍ଗ ପିଲାଙ୍କୁ ନେଇ ନିଜେ ଗୋଟିଏ କଂଗ୍ରେସ ଅନୁଷ୍ଠାନ ଗଢ଼ିଲେ । ଏହି ଅନୁଷ୍ଠାନରେ ଏଲ୍ଲାବାଦର ପ୍ରାୟ ସମସ୍ତ ସ୍କୁଲ ପିଲା ହଜାର ହଜାର ସଂଖ୍ୟାରେ ଆସି ଯୋଗ ଦେଇଥିଲେ । ଫଳରେ ଇନ୍ଦିରା ଭାରି ଖୁସି ହୋଇଥିଲେ ।

ଘରକୁ ଫେରି ଇନ୍ଦିରା ମାଆଙ୍କୁ ନିଜ ଅନୁଷ୍ଠାନ ସଂପର୍କରେ ସୂଚନା ଦେଇଥିଲେ । ଏହାର ଗୋଟିଏ ଭଲ ନାଁ ଦେବା ପାଇଁ ସେ ମାଆଙ୍କୁ ଅନୁରୋଧ କରିଥିଲେ । କମଳା କହିଥିଲେ, ‘‘ତୁମ ଅନୁଷ୍ଠାନର ନାଁ ‘ବାନରସେନା’ ଦିଅ । ଏହି ନାଁ ଶୁଣି ଇନ୍ଦିରା ପ୍ରଥମେ ପସନ୍ଦ କରି ନଥିଲେ । ଝିଅର ମନକୁ ଏହି ନାଁ ପାଉନାହିଁ ଜାଣି କମଳା ବାନରସେନା କାହାଣୀ ତାଙ୍କୁ ଶୁଣାଇଥିଲେ । ବାନରସେନା କିପରି ଶ୍ରୀରାମଚନ୍ଦ୍ରଙ୍କୁ ଲଙ୍କା ଜୟ କରିବାରେ ସାହାଯ୍ୟ କରିଥିଲେ, ସେ ସେକଥା ଝିଅକୁ ବୁଝାଇଥିଲେ । ତା’ପରେ ଇନ୍ଦିରା ଖୁସି ହୋଇ ନିଜ ଅନୁଷ୍ଠାନର ନାମ ରଖିଥିଲେ ‘ବାନରସେନା’।

ଇନ୍ଦିରାଙ୍କ ଏହି ‘ବାନରସେନା’ ସେହି ସମୟରେ କଂଗ୍ରେସ କର୍ମୀମାନଙ୍କୁ ବହୁ କାମରେ ସାହାଯ୍ୟ କରୁଥିଲେ । ସେମାନେ କର୍ମୀମାନଙ୍କୁ ଗୁପ୍ତ ସମ୍ବାଦ ଦେବା, ମାର୍ଚ୍ଚିଂ କରିବା, ସଭା ସମିତି ସ୍ଥାନକୁ ସଜାଇବା, ସ୍ୱେଚ୍ଛାସେବୀମାନଙ୍କୁ ରୋଷେଇ କରି ଖାଇବାକୁ ଦେବା, ପିଇବାକୁ ଦେବା ଆଦି କାମ କରୁଥିଲେ ।

## ବାପାଙ୍କ ପାଖରୁ ଚିଠି

ଜବାହରଲାଲ ନିଜର ଏଇ ଏକମାତ୍ର ଝିଅକୁ ଖୁବ୍ ଭଲ ପାଉଥିଲେ । ତାଙ୍କର ଇଚ୍ଛାଥିଲା ଇନ୍ଦୁ ଭଲ ଭାବରେ ପଢ଼ା ଶୁଣା କରୁ । ଭଲ କଥା ଶିଖୁ । ତେବେ ସେ ବେଶି ସମୟ ଜେଲରେ ରହୁଥିବାରୁ ଏଆଡ଼େ ନଜର ଦେଇପାରୁନଥିଲେ । ସେଥିପାଇଁ ସେ

କିଛି କିଛି ଉପଦେଶ ଚିଠି ସାହାଯ୍ୟରେ ଝିଅ ନିକଟକୁ ପଠାଉଥିଲେ । ଏଇସବୁ ଚିଠି ପରେ 'ପିତାଙ୍କର କନ୍ୟାକୁ ଚିଠି' ନାମରେ ବହି ହୋଇ ବାହାରିଛି ।

ଜବାହର ଚାରିବର୍ଷ ଜେଲ୍‌ରେ ରହିଥିଲେ । ଏହି ଜେଲ୍ ଜୀବନ ଭିତରେ ସେ ଇନ୍ଦିରାଙ୍କ ନିକଟକୁ ଶହେରୁ ଅଧିକ ଚିଠି ଲେଖିଥିଲେ । ସବୁଥିରେ ସେ ଇନ୍ଦିରାଙ୍କ ପାଇଁ ସ୍ନେହ ଓ ଆଶୀର୍ବାଦ ଅଜାଡ଼ି ଦେଉଥିଲେ । ଏଥି ସହିତ ଇନ୍ଦିରାଙ୍କ ପାଇଁ ଦେଶ ବିଦେଶର ବହୁ ଘଟଣା, ଉପଦେଶ ମଧ୍ୟ ସ୍ଥାନ ପାଉଥିଲା ।

ଥରେ ନେହେରୁ ଗୋଟିଏ ଚିଠିରେ ଲେଖିଥିଲେ - ''ଆମେମାନେ ମହାତ୍ମାଗାନ୍ଧୀଙ୍କୁ ଆଗରେ ରଖି ସ୍ୱାଧୀନତା ଆନ୍ଦୋଳନ ଚଳାଇଛେ । ତେଣୁ ଯାହା ଆମେ କରୁଛେ, ସେଥିପାଇଁ ଭୟ କରିବା ଉଚିତ୍ ନୁହେଁ । କୌଣସି କାମ ଲୁଚାଇ ଛପାଇ କରିବା ମଧ୍ୟ ଠିକ୍ ନୁହେଁ ।''

ଆଉ ଏକ ଚିଠିରେ ଲେଖିଥିଲେ - '' ତୁ ବଡ଼ ହୋଇ ଦେଶସେବା ପାଇଁ ନିଜକୁ ଜଣେ ସାହସୀ ବୀରା ରମଣୀ ଭାବେ ଗଢ଼ିବାକୁ ଚେଷ୍ଟା କର ।''

ଇନ୍ଦିରା ବାପାଙ୍କ କଥା ଅନୁସାରେ ନିଜକୁ ତିଆରି କରି ନେଉଥିଲେ । ଜବାହର ଘରେ ରହୁଥିବା ବେଳେ ଇନ୍ଦିରାଙ୍କୁ ଝାନ୍‌ସୀ

ରାଣୀ ଲକ୍ଷ୍ମୀବାଈ, ସୁଲତାନା ରେଜିଆ ଆଦିଙ୍କର ଜୀବନ କାହାଣୀ ମଧ୍ୟ ଶୁଣାଉଥିଲେ ।

ଇନ୍ଦିରାଙ୍କ ମାଆ କମଳା ସବୁବେଳେ ଅସୁସ୍ଥ ରହୁଥିଲେ । ତେଣୁ ଜବାହର ତାଙ୍କ ଚିକିତ୍ସା ପାଇଁ ତାଙ୍କୁ ୧୯୨୬ ମସିହାରେ ଇଉରୋପ ନେଇଯାଇଥିଲେ । ଇନ୍ଦିରା ମଧ୍ୟ ତାଙ୍କ ସହିତ ଯାଇଥିଲେ । ସେଠାରେ ରହିବା ସମୟରେ ଜବାହରଲାଲ ଇନ୍ଦିରାଙ୍କର ନାମ ସ୍ୱିଜରଲାଣ୍ଡର ଇକୋଲ୍ ନଭେଲ୍ ବିଦ୍ୟାଳୟରେ ଲେଖାଇଦେଇଥିଲେ । ଇନ୍ଦିରା ସେଠାରେ ପାଠ ପଢ଼ିଥିଲେ । ସେଠାରେ ସେ ଲେଖକ ରୋମାରୋଲାଁ, ନାଟ୍ୟକାର ବର୍ଣ୍ଣାଡଶ, ଅଭିନେତା ଚାର୍ଲି ଚାପଲିନ୍, ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ଆଦି ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ପରିଚିତ ହୋଇଥିଲେ । ବର୍ଷକ ପରେ ମାଆଙ୍କ ଦେହ ଭଲ ହୋଇଯିବାରୁ ସେମାନେ ଭାରତକୁ ଫେରିଆସିଲେ । ଇନ୍ଦିରା ପୁଣି ଏହ୍ଲାବାଦର ସେଣ୍ଟମେରୀ କନ୍‌ଭେଣ୍ଟ ସ୍କୁଲରେ ପାଠ ପଢ଼ିଲେ ।

୧୯୩୧ ମସିହାରେ ଇନ୍ଦିରାଙ୍କ ଜେଜେ ବାପା ମୋତିଲାଲଙ୍କ ପରଲୋକ ହୋଇଯାଇଥିଲା । ଇନ୍ଦିରା ଜେଜେବାପାଙ୍କ ମୃତ୍ୟୁରେ ଅତ୍ୟନ୍ତ ଭାଙ୍ଗି ପଡ଼ିଥିଲେ । ଜେଜେ ତାଙ୍କ ପାଇଁ ଥିଲେ ପ୍ରେରଣାଦାତା । ତାଙ୍କୁ ସେ ସାଙ୍ଗରେ ନେଇ ଚାରିଆଡ଼େ ବୁଲାଉଥିଲେ । ବହୁ ଉପଦେଶ ଦେଉଥିଲେ । ତେଣୁ ତାଙ୍କ ମରଣରେ ସେ ନିଜକୁ ଭାରି ଏକା ଏକା ମନେ କରିଥିଲେ । ଏହି

ସମୟରେ କମଳା ନେହେରୁଙ୍କୁ ଜେଲ୍‌କୁ ଯିବାକୁ ପଡ଼ିଥିଲା ।। ଫଳରେ ଇନ୍ଦିରାଙ୍କ ପାଇଁ ଜବାହରଲାଲ ଚିନ୍ତିତ ହୋଇ ପଡ଼ିଥିଲେ । ସେ ପାଠ ପଢ଼ିବେ କିପରି ?

ମହାତ୍ମାଗାନ୍ଧୀ ଏହା ଜାଣି ପାରି ଜବାହରଙ୍କୁ ପରାମର୍ଶ ଦେଇଥିଲେ, ଇନ୍ଦିରାଙ୍କୁ ପୁନାସ୍ଥିତ ପିଉପିଲ୍‌ସ ଓନ୍ ସ୍କୁଲରେ ପଢ଼ାଇବା ପାଇଁ । ଜବାହର ତାଙ୍କ କଥା ମାନି ଇନ୍ଦିରାଙ୍କୁ ସେଠାରେ ପଢ଼ାଇଥିଲେ । ଇନ୍ଦିରା ସେଠାରେ ଇଂରାଜୀ ଭାଷା ସହିତ ଫରାସୀ ଭାଷାରେ ମଧ୍ୟ ଜ୍ଞାନ ଅର୍ଜନ କରିଥିଲେ । ସେ ୧୯୩୪ ମସିହାରେ ଏହି ସ୍କୁଲରୁ ମେଟ୍ରିକ୍ ପାସ୍ କରିଥିଲେ ।

## ଶାନ୍ତିନିକେତନରେ ଇନ୍ଦିରା

ସ୍କୁଲ ଶିକ୍ଷାପରେ ଇନ୍ଦିରାଙ୍କୁ ଉଚ୍ଚ ଶିକ୍ଷାପାଇଁ ଶାନ୍ତିନିକେତନକୁ ପଠାଇବା ସ୍ଥିର ହୋଇଥିଲା । 'ଶାନ୍ତିନିକେତନ' ହିଁ ସେ ସମୟରେ ଏକମାତ୍ର ଆଦର୍ଶ ବିଶ୍ୱବିଦ୍ୟାଳୟ ଥିଲା । ସେଠାରେ ଗୁରୁ ରବୀନ୍ଦ୍ରନାଥ ପିଲାମାନଙ୍କୁ କଲେଜ ପାଠ ସହ ଭାରତୀୟ କଳା, ସଂସ୍କୃତି ଓ ଇତିହାସ ବିଷୟରେ ଶିକ୍ଷା ଦାନ କରୁଥିଲେ । ନେହେରୁ ଇନ୍ଦିରାଙ୍କ ପାଇଁ ଏହି ବିଶ୍ୱ ବିଦ୍ୟାଳୟ ସବୁ ଦୃଷ୍ଟିରୁ ଉପଯୁକ୍ତ ବୋଲି ମନେ କରିଥିଲେ । ତେଣୁ ଇନ୍ଦିରା 'ଶାନ୍ତିନିକେତନ'ରେ ଅନ୍ତତଃ ଗୋଟିଏ ବର୍ଷ ପଢ଼ୁ ବୋଲି ସେ ଚାହୁଁଥିଲେ ।

୧୯୩୪ ମସିହା ଜୁଲାଇ ମାସରେ ଇନ୍ଦିରା 'ଶାନ୍ତିନିକେତନ'କୁ ଗଲେ ପଢ଼ିବା ପାଇଁ । ସେ ଅତି ସାଧାରଣ ବେଶରେ ଗୋଟିଏ ଆଟାଚି ଧରି ଖାଲି ପାଦରେ ପିତାଙ୍କ ସହିତ ଯାଇଥାନ୍ତି । ପିଲାମାନେ ତାଙ୍କୁ ଦେଖି ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ସେମାନେ ଇନ୍ଦିରାଙ୍କ ବିଷୟରେ କେତେ କଥା ଭାବିଥିଲେ । ଏତେବଡ଼ ଘରର ଝିଅ । ଜେଜେବାପା ତାଙ୍କର ଜଣେ ନାଁକରା ଧନୀ ଲୋକ । ବାପା ଜଣେ ବଡ଼ ଲଢ଼ୁଆ ନେତା । ସେ କ'ଣ ଏମିତି ସେମିତି ଝିଅ ହୋଇଥିବେ ? କିନ୍ତୁ ତାଙ୍କର ସାଧାସିଧା ପୋଷାକ, ଖାଲିପାଦ ଓ ଶାନ୍ତସରଳ ଚେହେରା ଦେଖି ପିଲାମାନେ ବହୁତ ଖୁସି ହୋଇଯାଇଥିଲେ । ସେମାନେ ଖୁବ୍ ଶୀଘ୍ର ତାଙ୍କ ସହିତ ମିଶିଯାଇଥିଲେ । ଇନ୍ଦିରା ମଧ୍ୟ ନିଜର ଭଲ ଗୁଣ ଦ୍ୱାରା ସମସ୍ତଙ୍କୁ ନିଜର କରିନେଇଥିଲେ ।

ଶାନ୍ତି ନିକେତନରେ ଇନ୍ଦିର ଛାତ୍ରୀନିବାସ 'ଶ୍ରୀଭବନ'ରେ ରହିଥିଲ । ଏଠାକାର ଛାତ୍ରୀମାନଙ୍କୁ ଭୋର୍ ସାଢ଼େ ଚାରିଟାରୁ ଉଠି ନିଜ କାମ ନିଜେ କରିବାକୁ ପଡୁଥିଲା । ନିଜ ଲୁଗାପଟା ନିଜେ ସଫା କରିବା ସହିତ ଆଶ୍ରମ ପରିଷ୍କାର ରଖିବା, ରୋଷେଇ କରିବା, ସମସ୍ତଙ୍କୁ ଖାଇବାକୁ ବାଢ଼ି ଦେବା ଆଦି କାମ ସେମାନେ ପାଳି କରି କରୁଥିଲେ । ଇନ୍ଦିରା ମଧ୍ୟ ଅନ୍ୟ ଝିଅମାନଙ୍କ ପରି ନିଜ ପାଳିଦିନ ସେସବୁ କାମ ଆନନ୍ଦରେ କରି ଦେଉଥିଲେ । ତାଙ୍କର ଉତ୍ତମ

ବ୍ୟବହାର ସମସ୍ତଙ୍କୁ ଆନନ୍ଦ ଦେଉଥିଲା । ଇନ୍ଦିରାଙ୍କୁ ମଧ୍ୟ ଶାନ୍ତି ନିକେତନର ଶାନ୍ତ ପରିବେଶ ମୁଗ୍ଧ କରିଥିଲା ।

ଥରେ ଛାତ୍ରୀ ନିବାସର ଗୋଟିଏ ଝିଅର ସୁନା ଅଳଂକାର ଚୋରି ହୋଇଗଲା । କିଏ ଏହାକୁ ଚୋରି କରିଛି ଜାଣିବା ପାଇଁ ଛାତ୍ରୀନିବାସର ପରିଚାଳିକା ସମସ୍ତଙ୍କ ସୁଟ୍‌କେଶ ଓ ଜିନିଷପତ୍ର ଯାଞ୍ଚ କରିବାକୁ କହିଥିଲେ । ଇନ୍ଦିରାଙ୍କ ସୁଟ୍‌କେଶ ଛଡ଼ା । କାରଣ ଇନ୍ଦିରାଙ୍କ ଉପରେ ସେମାନଙ୍କର ବିଶ୍ୱାସ ଥିଲା । ମାତ୍ର ଇନ୍ଦିରା ପ୍ରଥମେ ତାଙ୍କ ଜିନିଷପତ୍ର ଯାଞ୍ଚ କରାଇନେଇଥିଲେ । ସେ ନିଜକୁ ସମସ୍ତଙ୍କ ସହିତ ସମାନ ମନେ କରୁଥିଲେ । ତାଙ୍କ ପାଇଁ ଅଲଗା ନୀତି ନିୟମ ହେଉ ବୋଲି ସେ ଚାହୁଁ ନଥିଲେ ।

ଶାନ୍ତିନିକେତନରେ ଗୁରୁ ରବୀନ୍ଦ୍ରନାଥ ଥିଲେ ଅତ୍ୟନ୍ତ ସ୍ନେହୀ ଓ ଉଦାର ହୃଦୟର ଲୋକ । ଇନ୍ଦିରା ପୂରାପୂରି ତାଙ୍କ ପ୍ରଭାବରେ ପ୍ରଭାବିତ ହୋଇଯାଇଥିଲେ । ଏହିଠାରେ ସେ କବିଗୁରୁଙ୍କ ନିକଟରୁ ବହୁ କଥା ଶିକ୍ଷା କରିଥିଲେ । ତାଙ୍କରି ପ୍ରେରଣାରେ ସେ ଚିତ୍ରକଳା ଓ ମଣିପୁରୀ ନାଚ ପ୍ରତି ଆଗ୍ରହୀ ହୋଇପଡ଼ିଥିଲେ । ଅଳ୍ପଦିନରେ ସେ ଏହାକୁ ଶିଖିଗଲେ । ୧୯୩୫ ମସିହା ଶାନ୍ତିନିକେତନର ବାର୍ଷିକ ଉତ୍ସବରେ ଭାଗ ନେଇ ସେ ମଣିପୁରୀ ନାଚ ପରିବେଷଣ କରିଥିଲେ । ସେଥିରେ ତାଙ୍କର ବେଶ୍ ନାଆଁ ହୋଇ ଯାଇଥିଲା ।

ଏହିପରି ଇନ୍ଦିରା ଶାନ୍ତି ନିକେତନରେ ଆନନ୍ଦରେ ଥିବା ବେଳେ ଦିନେ ହଠାତ୍ ତାଙ୍କ ପିତାଙ୍କ ନିକଟରୁ ଟେଲିଗ୍ରାମ୍ ପାଇଲେ । ସେଥିରେ ତାଙ୍କ ମାଆଙ୍କ ଅସୁସ୍ଥତା କଥା ଉଲ୍ଲେଖ ଥିଲା । ତେଣୁ ମା'ଙ୍କ ସେବା ପାଇଁ ସେ ଏହ୍ଲାବାଦ ଫେରିବା ନିମନ୍ତେ ଡାକରା ଥିଲା । ଏ ଟେଲିଗ୍ରାମ୍ ପାଇବା ମାତ୍ରେ ଇନ୍ଦିରା ମା'ଙ୍କ ନିକଟକୁ ଫେରିଆସିଥିଲେ । ମା'ଙ୍କ ସେବା କରିଥିଲେ ।

ଧୀରେ ଧୀର କମଳାଙ୍କ ଦେହ ଅଧିକ ଖରାପ ହୋଇଥିଲା । ଇନ୍ଦିରା ୧୯୩୫ ମସିହା ଏପ୍ରିଲ ମାସରେ ମାଆଙ୍କୁ ନେଇ ଜର୍ମାନ୍ ଯାଇଥିଲେ । ଜବାହରଲାଲ ନେହେରୁ ସେତେବେଳେ ଡ଼େରାଡୁନ୍ ଜେଲ୍‌ରେ ଥିଲେ । ଏହିପରି ବିପଦ ସମୟରେ ଇନ୍ଦିରାଙ୍କୁ ସେଠାରେ ଜଣେ ପାର୍ସୀ ଯୁବକ ସାହାଯ୍ୟ କରିଥିଲେ । ସେହି ଯୁବକ ଜଣକ ହେଲେ ଫିରୋଜ ଗାନ୍ଧୀ । ସେ ପରେ ଇନ୍ଦିରାଙ୍କୁ ବିବାହ କରିଥିଲେ । ସେଠାରେ କମଳାଙ୍କ ଦେହ ଭଲ ହେବା ପରିବର୍ତ୍ତେ ବେଶି ଖରାପ ହୋଇଥିଲା ।

ନେହେରୁ ଏ ଖବର ପାଇ ସେମାନଙ୍କ ନିକଟରେ ପହଞ୍ଚିଥିଲେ । ସେଠାରୁ ନେହେରୁ କମଳାଙ୍କୁ ସ୍ୱିଜରଲ୍ୟାଣ୍ଡ ନେଇଯାଇଥିଲେ । ଡାକ୍ତରମାନଙ୍କର ସବୁ ଚେଷ୍ଟା ସତ୍ତ୍ୱେ ୧୯୩୬ ମସିହା ଫେବୃୟାରୀ ମାସ ୨୮ ତାରିଖରେ କମଳା ଶେଷ ନିଃଶ୍ୱାସ

ତ୍ୟାଗ କରିଥିଲେ । ଇନ୍ଦିରା ମାଆଙ୍କୁ ହରାଇ ବଡ଼ ଆଘାତ ପାଇଥିଲେ । ମାଆ ଥିଲେ ତାଙ୍କ ଜୀବନର ଆଦର୍ଶ । ମାଆଙ୍କୁ ହରାଇ ଇନ୍ଦିରା ଅତି ଦୁଃଖୀ ହୋଇଯାଇଥିଲେ । ପିତା ନେହେରୁ ତାଙ୍କୁ ଏହି ସମୟରେ ବହୁତ ବୁଝା ସୁଝା କରିଥିଲେ ।

ମାଆଙ୍କ ମୃତ୍ୟୁ ପରେ ଇନ୍ଦିରା ଲଣ୍ଡନ ଚାଲିଯାଇ ଅକସ୍‌ଫୋର୍ଡ଼ର 'ସମରଭିଲ କଲେଜ'ରେ ବିଦ୍ୟାଶିକ୍ଷା କରିଥିଲେ । ସେଠାରେ ଭାରତୀୟ ଛାତ୍ରୀ ଶାନ୍ତାଗାନ୍ଧୀଙ୍କ ସହିତ ତାଙ୍କର ପରିଚୟ ହୋଇଥିଲା । ସେ ଶାନ୍ତା ଗାନ୍ଧୀଙ୍କ ସହିତ 'ଲଣ୍ଡନ ବୋର୍ଡ଼ିଂ ହାଉସ୍' ରେ ଏକାଠି ରହୁଥିଲେ । ଶାନ୍ତା ଗାନ୍ଧୀ ଥିଲେ ଜଣେ ଗୁଜୁରାଟୀ ଝିଅ । ନାଚରେ ଥିଲେ ସେ ଅତ୍ୟନ୍ତ ନିପୁଣା । ଇନ୍ଦିରା ମଧ୍ୟ ନାଚକୁ ଖୁବ୍ ଭଲ ପାଉଥିଲେ । ତେଣୁ ବେଳେବେଳେ ଦୁଇଜଣ ବିଭିନ୍ନ ପ୍ରକାର ନାଚ ପରିବେଷଣ କରି 'ସ୍ପେନ୍ ସାହାଯ୍ୟ ସମିତି' ପାଇଁ ଅର୍ଥ ଯୋଗାଡ଼ କରୁଥିଲେ । ସେହି ସମିତିର ସେମାନେ ସ୍ୱେଚ୍ଛାସେବିକା ଥିଲେ । ଇନ୍ଦିରା ମଧ୍ୟ ଭି.କେ. କୃଷ୍ଣମେନନ୍‌ଙ୍କ ଦ୍ୱାରା ପରିଚାଳିତ ''ଇଣ୍ଡିଆଲିଗ୍'' ଏବଂ ଚୀନା କମିଟିର ସଭ୍ୟାଥିଲେ ।

୧୯୩୮ ମସିହାରେ ଇନ୍ଦିରାଙ୍କୁ ୨୧ ବର୍ଷ ହୋଇଗଲା । ସେ ଏହି ସମୟରେ କଂଗ୍ରେସର ସଭ୍ୟା ହୋଇଥିଲେ ।

ସେହି ସମୟରେ ଫିରୋଜ ଗାନ୍ଧୀ,ଜ୍ୟୋତିବସୁ, ମୋହନକୁମାର ମଙ୍ଗଳମ୍, ରେଣୁକା ରାୟ, ଭୂପେଶ ଗୁପ୍ତ, ମିନୁ

ମାସାନୀ, ନିଖିଲ୍ ଚକ୍ରବର୍ତ୍ତୀ ଆଦି ବହୁ ଭାରତୀୟ ଛାତ୍ର ବିଲାତରେ ପାଠ ପଢୁଥିଲେ । ସେମାନେ ମଧ୍ୟ ଏକଛତ୍ରବାଦ ବିରୁଦ୍ଧରେ ସ୍ୱର ଉଠେଇଥିଲେ । ଇନ୍ଦିରା ଭାରତଠାରୁ ଦୂରରେ ରହିଲେ ମଧ୍ୟ ସବୁବେଳେ ଭାରତ ଓ ଅନ୍ୟ ଦେଶର ଖବର ରଖୁଥିଲେ । ସାରା ବିଶ୍ୱରୁ କିପରି ସାମ୍ରାଜ୍ୟବାଦୀ ଶାସନର ଶେଷ ଘଟିବ ଓ ଶାନ୍ତି ପ୍ରତିଷ୍ଠା ହେବ, ସେ ବିଷୟରେ ଇନ୍ଦିରା ଖୁବ୍ ଚିନ୍ତିତ ରହୁଥିଲେ । ଏତିକିବେଳେ ତାଙ୍କ ଜେଜେ ମା' ସ୍ୱରୂପାରାଣୀଙ୍କର ପରଲୋକ ହୋଇଯାଇଥିଲା । ଏହା ଇନ୍ଦିରାଙ୍କ ଦୁଃଖକୁ ଆହୁରି ବଢ଼ାଇ ଦେଇଥିଲା ।

୧୯୩୯ ମସିହାରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଥିଲା । ଏହା ଫଳରେ ସାରା ପୃଥିବୀ ଥରହର ହୋଇଉଠିଥିଲା । ଇନ୍ଦିରା ଏହି ଯୁଦ୍ଧ ପାଇଁ ନାଜିମାନଙ୍କୁ ଘୃଣା କରୁଥିଲେ । ଏହି ସମୟରେ ଭାରତରେ ମଧ୍ୟ ସତ୍ୟାଗ୍ରହ ଆରମ୍ଭ ହୋଇଯାଇଥିଲା । ବ୍ରିଟିଶ୍ ସରକାରଙ୍କ କୂଟନୀତି ବିରୁଦ୍ଧରେ ସଂଗ୍ରାମ କରି ଦେଶକୁ ମୁକ୍ତ କରିବା ପାଇଁ ଭାରତର ଚାରିଆଡ଼େ ଆନ୍ଦୋଳନର ନିଆଁ ଜଳିଉଠିଥିଲା । ବିନୋବା ଭାବେ, ମହାତ୍ମାଗାନ୍ଧୀ, ଜବାହରଲାଲ ନେହେରୁ ପ୍ରମୁଖ ଦେଶର ବଡ଼ ବଡ଼ ନେତା ଗିରଫ ହୋଇଯାଇଥିଲେ । ଫଳରେ ଆନ୍ଦୋଳନ ଭୟଙ୍କର ଆକାର ଧାରଣ କରିଥିଲା । ଏସବୁ ଖବର ପାଇ ଇନ୍ଦିରା ଭାରତକୁ ଫେରିଆସିବାକୁ ଚିନ୍ତା କଲେ ।

କିନ୍ତୁ ସେ ୧୯୩୯ ମସିହା ବେଳକୁ ପ୍ଲୁରୋସି ରୋଗରେ ଆକ୍ରାନ୍ତ ହୋଇଗଲେ । ଏହି ରୋଗରୁ ଭଲ ହେବା ପାଇଁ ସେ ସ୍ୱିଜରଲ୍ୟାଣ୍ଡକୁ ଚାଲିଗଲେ । ସେଠାରେ ତାଙ୍କ ମନ ଭାରତ ପାଇଁ ବେଶି ଅସ୍ଥିର ହୋଇ ଉଠିଲା । ସେ ନିଜେ ସତ୍ୟାଗ୍ରହରେ ଭାଗ ନେବେ ବୋଲି ମନେ ମନେ ସ୍ଥିର କଲେ । କିନ୍ତୁ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଯାଇଥିବାରୁ ଭାରତକୁ ଫେରିବା ତାଙ୍କ ପାଇଁ ସହଜ କଥା ନଥିଲା । ଶେଷରେ ସେ ପିଉସୀ କୃଷ୍ଣାଙ୍କ କଥାନୁସାରେ ୧୯୪୧ ମସିହାରେ ଉଡ଼ାଜାହାଜରେ ନ ଆସି ବୁଡ଼ା ଜାହାଜରେ ଭାରତକୁ ଫେରିଥିଲେ ।

ଇନ୍ଦିରାଙ୍କ ସହିତ ଭାରତକୁ ଫେରିଥିଲେ ଭୂପେଶ ଗୁପ୍ତ ଓ ଫିରୋଜ ଗାନ୍ଧୀ । ସେମାନେ ଡରବାନ୍ ବାଟ ଦେଇ ଭାରତକୁ ଫେରୁଥିବା ବେଳେ ସେଠାରେ ସାତ ଦିନ ଅଟକି ଯାଇଥିଲେ । ଇନ୍ଦିରା ସେହିଠାରେ କଳାଲୋକମାନଙ୍କ ପ୍ରତି ଗୋରା-ସାହେବମାନଙ୍କର ଅତ୍ୟାଚାରର ଦୃଶ୍ୟ ନିଜ ଆଖିରେ ଦେଖିଥିଲେ । ତାଙ୍କ ମନ କଳାଲୋକଙ୍କ ପ୍ରତି ସମବେଦନାରେ ଭରି ଯାଇଥିଲା । ଫଳରେ ତାଙ୍କ ପାଇଁ ଆୟୋଜିତ ସମ୍ବର୍ଦ୍ଧନା ସଭାରେ ସେ ତାଙ୍କ ଜୀବନର ପ୍ରଥମ ଭାଷଣରେ କଳାଗୋରା ଭେଦ ଭାବକୁ ନିନ୍ଦା କରିଥିଲେ ।

'ଡରବାନ୍'ରୁ ଇନ୍ଦିରା ବହୁ ଅଭିଜ୍ଞତା ଓ ଅନୁଭବକୁ

ସାଙ୍ଗରେ ନେଇ ଭାରତକୁ ଫେରି ଆସିଲେ । ଏହାପରେ ସେ ଆଉ କୌଣସି ବିଶ୍ୱବିଦ୍ୟାଳୟରେ ଶିକ୍ଷା ଗ୍ରହଣ କରି ନଥିଲେ ।

### ଫିରୋଜ ଗାନ୍ଧୀଙ୍କ ସହ ବିବାହ

୨୪ ବର୍ଷ ବୟସରେ ଇନ୍ଦିରା ୧୯୪୨ ମସିହା ମାର୍ଚ୍ଚ ମାସ ୨୬ ତାରିଖରେ ଫିରୋଜ ଗାନ୍ଧୀଙ୍କୁ ବିବାହ କରିଥିଲେ । ଫିରୋଜଗାନ୍ଧୀ ୧୯୧୨ ମସିହାରେ ବମ୍ବେରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ମାତା ଇନ୍ଦିରାଙ୍କ ଘର ଆନନ୍ଦ ଭବନ ନିକଟରେ ରହୁଥିଲେ । ତେଣୁ ଫିରୋଜ ଗାନ୍ଧୀଙ୍କ ପରିବାର ସହିତ ତାଙ୍କର ଭଲ ସଂପର୍କ ଥିଲା । ଗାନ୍ଧୀ ହେଉଛି ଫିରୋଜଙ୍କର ଏକ ଉପାଧି ମାତ୍ର । ସେ ପାର୍ଶୀ ସଂପ୍ରଦାୟ ହୋଇଥିଲେ ମଧ୍ୟ ଇନ୍ଦିରା ତାଙ୍କୁ ବିବାହ କରିବା ପାଇଁ ନିଜେ ଇଚ୍ଛା ପ୍ରକାଶ କରିଥିଲେ । ସେ ମଣିଷ ମଣିଷ ଭିତରେ, ଜାତି ଜାତି ମଧ୍ୟରେ ଓ ଧର୍ମ ଧର୍ମ ମଧ୍ୟରେ କୌଣସି ଫରକ ଦେଖୁନଥିଲେ । ବିବାହ ପରେ ଇନ୍ଦିରା ଫିରୋଜଙ୍କ ସହ କାଶ୍ମୀର ଚାଲିଯାଇଥିଲେ ।

କିଛି ଦିନ ପରେ ସେଠାରୁ ଫେରି ସେମାନେ ପୋର୍ଟ ରୋଡ଼ରେ ଗୋଟିଏ ଭଡ଼ା ଘର ନେଇ ରହିଥିଲେ । ଫିରୋଜଗାନ୍ଧୀ ଦୈନିକ ସମ୍ବାଦପତ୍ର 'ନେସନାଲ ହେରାଲଡ୍'ର ପରିଚାଳନା ଦାୟିତ୍ୱରେ ରହିଥିଲେ । ଇନ୍ଦିରା ମଧ୍ୟ ପିତାଙ୍କ ପରି ନିଜକୁ ଦେଶ ସେବାରେ ନିୟୋଜିତ କରିଥିଲେ ।

ଦିନେ ଇନ୍ଦିରାଙ୍କୁ 'ଇୱିନିଂ ଖ୍ରୀଷ୍ଟିଆନ କଲେଜ'ର ପିଲାମାନେ ତ୍ରିରଙ୍ଗା ପତାକା ଉତ୍ତୋଳନ କରିବାକୁ ଡ଼ାକିଥିଲେ । ସେତେବେଳେ 'ଭାରତଛାଡ଼' ଆନ୍ଦୋଳନ ଚାଲିଥାଏ । ବ୍ରିଟିଶ୍ ପୋଲିସ୍ ଲୋକମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚଳାଉଥାନ୍ତି । ଇନ୍ଦିରା ସେଠାରେ ଗଣ୍ଡଗୋଳର ଆଶଙ୍କା କରି ମଧ୍ୟ ପତାକା ଉତ୍ତୋଳନ କରିବାକୁ ଗଲେ । କିନ୍ତୁ ସେ ପହଞ୍ଚିବା ପୂର୍ବରୁ ପୋଲିସ୍ ଛାତ୍ରମାନଙ୍କୁ ମାଡ଼ ଦେବାରେ ଲାଗିଥିଲେ । ଇନ୍ଦିରା ଛାତ୍ରମାନଙ୍କ ଅବସ୍ଥା ଓ ସାହସ ଦେଖି ନିଜେ ସେମାନଙ୍କ ହାତରୁ ଜାତୀୟ ପତାକାକୁ ନେଇ ଆସିଥିଲେ ଓ ଉପରକୁ ଟେକି ଧରିଥିଲେ । ଏହାପରେ 'ଭାରତମାତା କି ଜୟ' 'ତ୍ରିରଙ୍ଗା ପତାକା କି ଜୟ' ଆଦି ଧ୍ୱନି ଦେଇଥିଲେ । ଏହା ସହିତ 'ଝଣ୍ଡା ଉଞ୍ଚା ରହେ ହମାରା, ବିଜୟୀ ବିଶ୍ୱ ତ୍ରିରଙ୍ଗା ପ୍ୟାରା'' ସଂଗୀତ ଗାନ କରିଥିଲେ । ଏଥିରେ ପୋଲିସ୍ ରାଗିଯାଇ ଇନ୍ଦିରାଙ୍କୁ ମଧ୍ୟ ବାଡ଼େଇଥିଲେ । ଇନ୍ଦିରା କିନ୍ତୁ ଡରି ଯାଇନଥିଲେ । ବରଂ ଇଂରେଜ ସରକାରଙ୍କ ବିରୁଦ୍ଧରେ ସଭା ସମିତି କରି ଲୋକମାନଙ୍କୁ ଉତେଇ ଦେଇଥିଲେ ।

ଥରେ ଏମିତି ଏକ ସାଧାରଣ ସଭାରେ ଭାଷଣ ଦେଉଥିବା ବେଳେ ପୋଲିସ ତାଙ୍କୁ ଓ ଫିରୋଜ ଗାନ୍ଧୀଙ୍କୁ ଗିରଫ କରି ନୈନି ଜେଲ୍‌ରେ ରଖିଥିଲେ । ସେ ୧୯୪୩ ମସିହା ମେ ମାସ ତେର ତାରିଖରେ ଜେଲ୍‌ରୁ ଖଲାସ ହୋଇଥିଲେ । ଫିରୋଜ ଗାନ୍ଧୀ ମଧ୍ୟ ୧୯୪୩ ମସିହା ଅଗଷ୍ଟ ମାସରେ ଜେଲ୍‌ରୁ ଖଲାସ ହେଲେ ।

ଇନ୍ଦିରା ଗାନ୍ଧୀଙ୍କର ଦୁଇଟି ପୁଅ ହୋଇଥିଲେ । ବଡ଼ ପୁଅ ରାଜୀବ ଗାନ୍ଧୀ ୧୯୪୪ ମସିହା ଅଗଷ୍ଟ ୨୦ ତାରିଖରେ ଓ ଦ୍ୱିତୀୟ ପୁତ୍ର ସଂଜୟ ଗାନ୍ଧୀ ୧୯୪୬ ମସିହା ଡ଼ିସେମ୍ବର ୧୪ ତାରିଖରେ ଜନ୍ମଗ୍ରହଣ କରିଥିଲେ ।

୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖ ଦିନ ଭାରତବର୍ଷ ସ୍ୱାଧୀନ ହେଲା । କିନ୍ତୁ ଏହା ପୂର୍ବରୁ ମହାତ୍ମାଗାନ୍ଧୀଙ୍କ ବିରୋଧ ସତ୍ତ୍ୱେ ଭାରତବର୍ଷ ଦୁଇ ଭାଗ ହୋଇଗଲା । ମୁସଲମାନ ବହୁଳ ଅଞ୍ଚଳକୁ ନେଇ ଗଠିତ ହେଲା ପାକିସ୍ତାନ ଓ ଅବଶିଷ୍ଟ ଅଞ୍ଚଳ ଭାରତ ବର୍ଷ ନାମରେ ପରିଚିତ ହେଲା । ପଣ୍ଡିତ ଜବାହର ଲାଲ ନେହେରୁ ହେଲେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ । କିନ୍ତୁ ସ୍ୱାଧୀନତାପ୍ରାପ୍ତିର ଗୋଟିଏ ବର୍ଷ ନପୂରୁଣୁ ଗୋଟିଏ ବଡ଼ ଅଘଟଣ ଘଟିଗଲା । ଜଣେ ସାଂପ୍ରଦାୟିକବାଦୀ ହିନ୍ଦୁ ଯୁବକ ନାଥୁରାମ ଗଡ଼ସେ ୧୯୪୮ ମସିହା ଜାନୁୟାରୀ ୩୦ ତାରିଖ ଦିନ ନୂଆଦିଲ୍ଲୀ ପ୍ରାର୍ଥନା ସଭାରେ ଗାନ୍ଧିଜୀଙ୍କୁ ଗୁଳିକରି ହତ୍ୟାକଲା । ଇନ୍ଦିରାଙ୍କ ପାଇଁ ଥିଲା ଏହା ଦାରୁଣ ଶୋକାଦାୟକ ଘଟଣା ।

ନେହେରୁ ତିନିମୂର୍ତ୍ତି ଭବନରେ ଏକୁଟିଆ ରହୁଥିଲେ । ମହାତ୍ମାଗାନ୍ଧୀଙ୍କ ମୃତ୍ୟୁ ପରେ ତାଙ୍କ ଦେହ ମଧ୍ୟ ଅସୁସ୍ଥ ରହୁଥିଲା ।ତେଣୁ ଇନ୍ଦିରା ଓ ଫିରୋଜ ତାଙ୍କର ଯତ୍ନ ନେବା ପାଇଁ

ତିନିମୂର୍ତ୍ତି ଭବନକୁ ଚାଲିଆସିଥିଲେ । ଇନ୍ଦିରା ତିନିମୂର୍ତ୍ତି ଭବନରେ ଦେଶ ବିଦେଶରୁ ଆସୁଥିବା ଅତିଥିମାନଙ୍କର ଦେଖା ଶୁଣା ମଧ୍ୟ କରୁଥିଲେ । ତାଙ୍କର ଦୁଇ ପୁଅ ରାଜୀବ ଓ ସଂଜୟ ସେତେବେଳେ ଡେରାଡୁନରେ ପଢୁଥିଲେ ।

ଇନ୍ଦିରା ଅନାଥ ଓ ଗରିବ ପିଲାଙ୍କୁ ଭାରି ଭଲ ପାଉଥିଲେ । ସେମାନଙ୍କ ଦୁଃଖ ଦେଖିଲେ ସେ ଜମାରୁ ସହିପାରୁନଥିଲେ । ତେଣୁ ତାଙ୍କ ପାଇଁ ସେ 'ବାଲ୍ ସହଯୋଗ ସଂସ୍ଥା' ଗଠନ କରିଥିଲେ । ସେଠାରେ ଅନାଥ ପିଲାଙ୍କୁ ଖାଇବା, ପିଇବା, ପଢ଼ିବା ଓ ନିଜ ଗୋଡ଼ରେ ନିଜେ ଠିଆ ହେବାର ଶିକ୍ଷା ଦିଆଯାଉଥିଲା । ଏହା ବ୍ୟତୀତ ସେ ଶିଶୁମାନଙ୍କ ପାଇଁ 'ଭାରତୀୟ ଶିଶୁ କଲ୍ୟାଣ ପରିଷଦ' ମଧ୍ୟ ଗଠନ କରିଥିଲେ ।

ଆଦିବାସୀ ଓ ହରିଜନ ପିଲାଙ୍କ ପ୍ରତି ତାଙ୍କର ମମତା ବେଶି ଥିଲା । ତାଙ୍କ ଶାସନ ସମୟରେ ସେ ପିଲାମାନଙ୍କ ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ କରିଥିଲେ । ବିଭିନ୍ନ ପ୍ରକାର ନୂଆ ଯୋଜନା ସବୁ ଆରମ୍ଭ କରିଥିଲେ । ସେ ସବୁବେଳେ କହୁଥିଲେ ପିଲାମାନେ ହିଁ ହେଉଛନ୍ତି ଆଗାମୀ ଭାରତ ଗଠନର ସେବକ । ତେଣୁ ସେମାନଙ୍କୁ ଭଲ ଭାବରେ ଗଢ଼ି ତୋଳିବାହିଁ ହେଉଛି ଭବିଷ୍ୟତକୁ ସୁନ୍ଦର କରିବା ।

ଇନ୍ଦିରାଙ୍କର ବିଚାରଧାରା ଥିଲା ଅତି ଉଚ୍ଚମାନର । ସେ ଅତି ସହଜରେ ବିଭିନ୍ନ ସମସ୍ୟାର ସମାଧାନ କରିପାରୁଥିଲେ । ସେଥିପାଇଁ ୧୯୫୯ ମସିହାରେ କଂଗ୍ରେସର ଅଧ୍ୟକ୍ଷା ଭାବେ ସେ ନିର୍ବାଚିତ ହୋଇଥିଲେ । କିନ୍ତୁ ପିତାଙ୍କ ପ୍ରଧାନମନ୍ତ୍ରୀତ୍ୱ ସମୟରେ ସେ କୌଣସି ମନ୍ତ୍ରୀ ପଦରେ ନିଯୁକ୍ତ ହୋଇନଥିଲେ । ତଥାପି ସେ କଂଗ୍ରେସର ଜଣେ ସକ୍ରିୟ ସଭ୍ୟା ଥିଲେ ।

୧୯୬୦ ମସିହା ସେପ୍ଟେମ୍ବର ମାସ ୮ ତାରିଖ ଦିନ ତାଙ୍କ ସ୍ୱାମୀ ଫିରୋଜ ଗାନ୍ଧୀଙ୍କର ପରଲୋକ ହୋଇଯାଇଥିଲା । ଏହି ଦୁଃଖକୁ ଇନ୍ଦିରା ସହି ଯାଇଥିଲେ ଦୁଇ ପୁଅଙ୍କ ମୁହଁକୁ ଚାହିଁ । ସେମାନଙ୍କର ଉପଯୁକ୍ତ ଦାୟିତ୍ୱ ନେବାରେ ସେ ଲାଗିପଡ଼ିଥିଲେ । ଏହି ସମୟରେ ତାଙ୍କୁ ଆଉ ଏକ ଦାରୁଣ ଧକ୍କା ଦେଇଥିଲା ପିତାଙ୍କର ମୃତ୍ୟୁ । ଜବାହାର ଲାଲ ନେହେରୁ ୧୯୬୪ ମସିହା ମେ' ମାସ ୨୭ ତାରିଖ ଦିନ ପ୍ରଧାନମନ୍ତ୍ରୀ ପଦରେ ଥାଇ ମୃତ୍ୟୁବରଣ କରିଥିଲେ । ଇନ୍ଦିରା ବହୁ କଷ୍ଟରେ ଏହି ଦୁଃଖକୁ ସମ୍ଭାଳି ପାରିଥିଲେ ।

## କ୍ଷମତା ରାଜନୀତିରେ ପ୍ରବେଶ

ନେହେରୁଙ୍କ ମୃତ୍ୟୁ ପରେ ଲାଲ ବାହାଦୂର ଶାସ୍ତ୍ରୀ ଭାରତର ପ୍ରଧାନମନ୍ତ୍ରୀ ହୋଇଥିଲେ । ଇନ୍ଦିରା ସୂଚନା ଓ ବେତାର ବିଭାଗ

ମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ଏହି ସମୟରୁ ତାଙ୍କର ରାଜନୈତିକ ଜୀବନ ଭିନ୍ନ ମୋଡ଼ ନେଲା । କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ଯୋଗଦେଇ ସେ ଲୋକଙ୍କ ପାଇଁ ନାନା ଉନ୍ନୟନ ମୂଳକ କାର୍ଯ୍ୟ ଆରମ୍ଭ କରିଥିଲେ ।

ଇନ୍ଦିରା ସୂଚନା ଓ ବେତାର ବିଭାଗ ମନ୍ତ୍ରୀ ହେବା ପରେ ସାଧାରଣ ଲୋକଙ୍କ ପାଇଁ ଶସ୍ତା ଦାମ୍‌ରେ ରେଡ଼ିଓ ତିଆରି ଉପରେ ଗୁରୁତ୍ୱ ଦେଇଥିଲେ । ଏହାଛଡ଼ା ଭାରତୀୟ କଳା ଓ ସଂସ୍କୃତିକୁ ବଞ୍ଚାଇ ରଖିବା ପାଇଁ ସେ ଚେଷ୍ଟା କରିଥିଲେ । ସେ ମଧ୍ୟ ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବର ଆୟୋଜନ କରିଥିଲେ । ଏହି ସମୟରେ ସେ ଲୋକମାନଙ୍କ ପାଇଁ ଅନେକ ଭଲ କାମ କରି ନିଜର ସ୍ୱତନ୍ତ୍ର ସ୍ଥାନ ପ୍ରସ୍ତୁତ କରିନେଇଥିଲେ ।

ସେ ପ୍ରଥମ ମନ୍ତ୍ରୀ ଭାବେ ସରକାରଙ୍କ ପକ୍ଷରୁ ରଷ୍ୟ ଯାଇଥିଲେ । ସେମାନଙ୍କ ସହିତ ଭାରତର ସଦ୍‌ଭାବ ଓ ମୈତ୍ରୀ ଭାବ ପ୍ରତିଷ୍ଠା କରି ଫେରିଆସିଥିଲେ । ଏହାପରେ ଭାରତ ପାକିସ୍ତାନ ଯୁଦ୍ଧରେ ସେ ବିଶେଷ ଭୂମିକା ଗ୍ରହଣ କରିଥିଲେ । ପାକିସ୍ତାନ ସ୍ୱତନ୍ତ୍ର ଦେଶ ହେବା ପରଠାରୁ ଭାରତ ସହିତ ସବୁବେଳେ ଗଣ୍ଡଗୋଳ ଲଗାଉଥିଲା । କାଶ୍ମୀର ଅଧିକାର କରିବା ପାଇଁ ପାକିସ୍ତାନ ଚେଷ୍ଟା ଚଳାଇଥିଲା । ଫଳରେ ୧୯୬୫ ମସିହାରେ ପାକିସ୍ତାନ ଭାରତ

ଆକ୍ରମଣ କଲା । ଏହି ଯୁଦ୍ଧ ସମୟରେ ଇନ୍ଦିରା ଭାରତୀୟ ଜବାନମାନଙ୍କର ପ୍ରେରଣା ଓ ଉତ୍ସାହ ବଢ଼ାଇଥିଲେ । ନିଜେ ଯୁଦ୍ଧ କ୍ଷେତ୍ର ନିକଟବର୍ତ୍ତୀ ସ୍ଥାନକୁ ଯାଇଥିଲେ । ସେ ଜନସାଧାରଣଙ୍କୁ କହୁଥିଲେ - " ଆମେ ସମସ୍ତେ ଭାରତୀୟ । ଆମମାନଙ୍କ ମଧ୍ୟରେ କେହି ବିଭେଦ ସୃଷ୍ଟି କରିପାରିବ ନାହିଁ । ଆମେ ସେ ସୁଯୋଗ ମଧ୍ୟ ତାଙ୍କୁ ଦେବାନାହିଁ ।"

ଯୁଦ୍ଧ ନିମନ୍ତେ ଇନ୍ଦିରା ଦେଶର ବିଭିନ୍ନ ସ୍ଥାନରୁ ଅର୍ଥ ଯୋଗାଡ଼ କରିଥିଲେ । ଶେଷରେ ୧୯୬୬ ମସିହା ଜାନୁୟାରୀ ମାସରେ ଯୁଦ୍ଧ ବିରତି ପାଇଁ ଭାରତ ପାକିସ୍ତାନ ମଧ୍ୟରେ ତାସ୍କନ୍ଦଠାରେ ଚୁକ୍ତି ହୋଇଥିଲା । ଏହି ଚୁକ୍ତି ସ୍ୱାକ୍ଷରିତ ହେବା ପରେ ପରେ ଲାଲ ବାହାଦୁର ଶାସ୍ତ୍ରୀ ୧୯୬୬ ମସିହାରେ ମୃତ୍ୟୁବରଣ କରିଥିଲେ ।

## ଭାରତବର୍ଷର ପ୍ରଥମ ମହିଳା ପ୍ରଧାନମନ୍ତ୍ରୀ

ଶାସ୍ତ୍ରୀଜୀଙ୍କ ମୃତ୍ୟୁ ପରେ ଇନ୍ଦିରାଗାନ୍ଧୀ ୧୯୬୬ ମସିହା ଜାନୁୟାରୀ ମାସ ୨୪ ତାରିଖରେ ଭାରତର ପ୍ରଧାନମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ସେ ହୋଇଥିଲେ ଭାରତର ପ୍ରଥମ ମହିଳା ପ୍ରଧାନମନ୍ତ୍ରୀ । ସମଗ୍ର ଭାରତ ବର୍ଷରେ ଏକତା ଓ ସଂହତି

ସୃଷ୍ଟି କରିବା ଥିଲା ତାଙ୍କର ପ୍ରଥମ ଉଦ୍ଦେଶ୍ୟ । ସେଥିପାଇଁ ସେ ଦେଶର ଅଗ୍ରଗତିରେ ମନ ପ୍ରାଣ ଢ଼ାଳି ଦେଇଥିଲେ । ଶାସ୍ତ୍ରୀଙ୍କ ସମୟରେ ଦେଶରେ ନାନା ପ୍ରକାର ସମସ୍ୟା ଉପୁଜି ଥିଲା । ସେସବୁର ସମାଧାନ ଇନ୍ଦିରାଙ୍କ ଉପରେ ପଡ଼ିଥିଲା ।

ଇନ୍ଦିରା ପ୍ରଧାନମନ୍ତ୍ରୀ ହେବା ପରେ ପ୍ରଥମେ ସାଧାରଣ ଲୋକଙ୍କ ପ୍ରତି ଦୃଷ୍ଟି ଦେଇଥିଲେ । ଗରିବମାନଙ୍କୁ ସମାଜରେ ସମାନ ଅଧିକାର ଦେବା, ସେମାନଙ୍କୁ ନ୍ୟାୟ ପ୍ରଦାନ କରିବା ଓ ଗରିବୀ ହଟାଇବା ଆଦି ଉପରେ ସେ ବେଶି ଗୁରୁତ୍ୱ ଆରୋପ କରିଥିଲେ । ବିଶେଷତଃ ସେ ସମାଜରୁ କୁ-ସଂସ୍କାର ଦୂର କରିବା ପାଇଁ ବଦ୍ଧପରିକର ହୋଇଥିଲେ । ସବୁ ଜାତି, ସବୁ ଗୋଷ୍ଠୀ ଓ ସବୁ ସଂପ୍ରଦାୟର ଲୋକଙ୍କୁ ସେ ସମାନ ଦୃଷ୍ଟିରେ ଦେଖୁଥିଲେ । ସବୁ ମଣିଷ ଯେ ସମାନ ଏହା ସେ ଦେଖାଇ ଦେବାକୁ ଚାହୁଁଥିଲେ । ସେଥିପାଇଁ ସେ ନିଜେ ହଜାର ହଜାର ମାଇଲ ବାଟ ଯାଇ ଲୋକଙ୍କ ସୁଖ ଦୁଃଖ ବୁଝୁଥିଲେ । ଗାଁ ଗହଳିରୁ କୁସଂସ୍କାର, ଅଶିକ୍ଷା, ଭେଦଭାବକୁ ଦୂର କରି ସମସ୍ତେ କିପରି ଭଲରେ ବଞ୍ଚିବାର ସୁବିଧା ସୁଯୋଗ ପାଇବେ ସେଥିପାଇଁ ମଧ୍ୟ ସେ ଆଗଭର ହୋଇଥିଲେ । ଏଥିପାଇଁ ସେ ପରେ କୋଡ଼ିଏ ଦଫା କାର୍ଯ୍ୟକ୍ରମ ଚଳାଇଥିଲେ ।

ଇନ୍ଦିରା ବିଦେଶୀ ଦେଶମାନଙ୍କ ସହିତ ବନ୍ଧୁତା ରକ୍ଷା କରିବା ପାଇଁ ସବୁବେଳେ ଚେଷ୍ଟା କରିଥିଲେ । ସେ ପ୍ରଥମେ ଆମେରିକା

ଭ୍ରମଣରେ ଯାଇଥିଲେ । ସେଠରେ ତତ୍‌କାଳୀନ ରାଷ୍ଟ୍ରପତି ଜନସନ୍‌ଙ୍କ ସହିତ ଆମେରିକାବାସୀ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଜଣାଇଥିଲେ । ଇନ୍ଦିରାଗାନ୍ଧୀ ଭାରତରୁ ଦାରିଦ୍ର୍ୟ ଦୂର କରିବା ପାଇଁ କୃଷି ଉତ୍ପାଦନ କିପରି ବଢ଼ିବ ସେ ସଂପର୍କରେ ଆମେରିକାର ସାହାଯ୍ୟ ଲୋଡ଼ିଥିଲେ । ସେତେବେଳେ ଭାରତରେ ଖାଦ୍ୟଶସ୍ୟର ଘୋର ଅଭାବ ଦେଖାଦେଇଥିଲା । ଆମେରିକାର ରାଷ୍ଟ୍ରପତି ଇନ୍ଦିରାଙ୍କ ବ୍ୟକ୍ତିତ୍ୱରେ ପ୍ରଭାବିତ ହୋଇ ଭାରତକୁ ଖାଦ୍ୟ ଶସ୍ୟ ସାହାଯ୍ୟ ଦେବା ନିମନ୍ତେ ସ୍ୱୀକୃତି ପ୍ରଦାନ କରିଥିଲେ ।

୧୯୬୭ ମସିହାରେ ଦେଶରେ ସାଧାରଣ ନିର୍ବାଚନ ହୋଇଥିଲା । ଇନ୍ଦିରାଗାନ୍ଧୀ କଂଗ୍ରେସର ଜଣେ ପ୍ରଚାରକ ଭାବେ ଚାରିଆଡ଼େ ଭାଷଣ ଦେଉଥିଲେ । ଭାରତର ବିଭିନ୍ନ ସ୍ଥାନରେ ନିର୍ବାଚନ ସଭା କରୁଥିଲେ । ଏହିପରି ଓଡ଼ିଶାକୁ ସେ ଫେବୃୟାରୀ ୮ ତାରିଖରେ ପ୍ରଚାର ପାଇଁ ଆସିଥିଲେ । ଭୁବନେଶ୍ୱର ପ୍ୟାରେଡ୍ ପଡ଼ିଆରେ ଭାଷଣ ଦେଉଥିବା ବେଳେ କେତେକ ବିରୋଧୀଲୋକ ତାଙ୍କ ଉପରକୁ ଟେକା ମାଡ଼ କରିଥିଲେ । ତାଙ୍କ ନାକରେ ଟେକା ବାଜି ନାକ ଫାଟି ଯାଇଥିଲା । ବୋହି ଯାଉଥିବା ରକ୍ତକୁ ସେ ଲୁଗା କାନିରେ ଚାପି ଧରିଥିଲେ । ଏହାକୁ ଖାତିର୍ ନକରି ନିଜେ ଭାଷଣ ଚଳାଇ ରଖିଥିଲେ । ଏଥିରୁ ସେ କିପରି ଦୃଢ଼ମନା ଥିଲେ, ତାହା ଜଣାଯାଏ ।

ଦେଶରେ ଦେଖା ଦେଇଥିବା ବହୁ ସମସ୍ୟା ଓ ଗଣ୍ଡଗୋଳକୁ ସେ ସାହସର ସହିତ ଧୀରେ ଧୀରେ ସମାଧାନ କରିଥିଲେ । ପଞ୍ଜାବ ଓ ହରିୟାନାକୁ ସେ ଦୁଇଟି ଅଲଗା ରାଜ୍ୟରେ ପରିଣତ କରିଥିଲେ ।

ଏହା ବ୍ୟତୀତ ଭାରତ ଅର୍ଥନୀତିର ଉନ୍ନତି ପାଇଁ ସେ ଚଉଦଗୋଟି ବଡ଼ ବ୍ୟାଙ୍କ୍‌କୁ ଜାତୀୟ କରଣ କରିଥିଲେ । ଦେଶର ହିତ ସାଧନ ପାଇଁ ସେ ରାଜା ମହାରାଜାମାନଙ୍କର ହାତ ପାଣ୍ଠି ବନ୍ଦ କରିଥିଲେ । ଭାଷା ସମସ୍ୟାକୁ ବି ସମାଧାନ କରିଥିଲେ । ଏସବୁ କରି ସେ ନିଜ ସାହସିକତାର ପରିଚୟ ଦେଇଥିଲେ ।

ନିଜ ଉପରେ ଇନ୍ଦିରା ଗାନ୍ଧୀଙ୍କର ବହୁତ ଭରସା ଥିଲା । ସେ ଯାହା ଭଲ ଭାବୁଥିଲେ, ତାକୁ ପୂରା କରିବାକୁ କେବେ ହେଲେ ପଛାଉ ନଥିଲେ । ସେଥିପାଇଁ କଂଗ୍ରେସ ଦଳର କେତେକ ନେତା ତାଙ୍କର ବିରୋଧୀ ହୋଇ ଯାଇଥିଲେ । ସେମାନେ ଇନ୍ଦିରାଙ୍କୁ ପଛରେ ଗାଳି ଦେଉଥିଲେ । କିନ୍ତୁ ଏସବୁକୁ ସେ ଖାତିର କରୁନଥିଲେ । କାହାରି ପାଖରେ ମୁଣ୍ଡ ନ ନୁଆଁଇ ସେ ଏହାର ମୁକାବିଲା କରୁଥିଲେ । ଫଳରେ ୧୯୬୯ ମସିହା ନଭେମ୍ବର ମାସ ୧୨ ତାରିଖ ଦିନ ତାଙ୍କୁ ଓ ତାଙ୍କର ସମର୍ଥକମାନଙ୍କୁ ଦଳ ବିରୋଧୀ କାର୍ଯ୍ୟ ଯୋଗୁଁ ଅଲଗା କରାଯାଇଥିଲା । ଏହାଦ୍ୱାରା ଭାରତୀୟ

ଜାତୀୟ କଂଗ୍ରେସର ବିଭାଜନ ହୋଇଥିଲା । ଇନ୍ଦିରା ଯେଉଁ କଂଗ୍ରେସ ଦଳର ନେତ୍ରୀ ଥିଲେ, ଅବଶେଷରେ ତାହାହିଁ ଅସଲି କଂଗ୍ରେସ ବୋଲି ପ୍ରମାଣିତ ହୋଇଥିଲା ।

## ସ୍ୱାଧୀନ ବାଂଲାଦେଶ ଗଠନ

ଇନ୍ଦିରା ବଙ୍ଗଳା ଦେଶ ଗଠନରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ୧୯୭୧ ମସିହାରେ ପୂର୍ବ ପାକିସ୍ତାନ ଉପରେ ପଶ୍ଚିମ ପାକିସ୍ତାନର ସୈନ୍ୟବାହିନୀ ଅମାନୁଷିକ ଅତ୍ୟାଚାର ଚଳାଇଥିଲେ । ଫଳରେ ପୂର୍ବ ପାକିସ୍ତାନର ଜାତୀୟବାଦୀ ନେତା ମୁଜିବୁର ରହେମାନ ତାଙ୍କ ଦେଶର ମୁକ୍ତି ସଂଗ୍ରାମ ପାଇଁ ଭାରତ ବର୍ଷର ସହାୟତା ଲୋଡ଼ିଥିଲେ । ବହୁ ସଂଖ୍ୟକ ପୂର୍ବ ପାକିସ୍ତାନୀ ଶରଣାର୍ଥୀ ଭାରତରେ ଆଶ୍ରୟ ଗ୍ରହଣ କରିଥିଲେ । ସେତେବେଳେ ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ପଶ୍ଚିମ ପାକିସ୍ତାନ ସୈନ୍ୟବାହିନୀକୁ ପୂର୍ବ ପାକିସ୍ତାନରୁ ହଟିଯିବା ପାଇଁ ଆବେଦନ କରିଥିଲେ । ଏଥିପାଇଁ ସେ ପୃଥିବୀର ବିଭିନ୍ନ ରାଷ୍ଟ୍ର ନାୟକମାନଙ୍କୁ ହସ୍ତକ୍ଷେପ କରିବାକୁ ମଧ ଅନୁରୋଧ କରିଥିଲେ । କିନ୍ତୁ ପଶ୍ଚିମ ପାକିସ୍ତାନର ରାଷ୍ଟ୍ରପତି ଇନ୍ଦିରାଙ୍କ କଥା ଶୁଣିନଥିଲେ । ଫଳରେ ଭାରତୀୟ ସୈନ୍ୟବାହିନୀ ପୂର୍ବବଙ୍ଗ ମୁକ୍ତିବାହିନୀ ସହିତ କାନ୍ଧକୁ କାନ୍ଧ ମିଳାଇ ଲଢ଼େଇ କରିଥିଲେ । ଏହି ଲଢ଼େଇରେ ପାକିସ୍ତାନ ସଂପୂର୍ଣ୍ଣ ପରାସ୍ତ

ହୋଇଥିଲା । ପାକିସ୍ତାନ ସୈନ୍ୟବାହିନୀ ଭାରତୀୟ ସେନାଧ୍ୟକ୍ଷଙ୍କ ପାଖରେ ଆତ୍ମ ସମର୍ପଣ କରିଥିଲେ । ଶେଖ୍ ମୁଜିବୁର୍ ରହେମାନଙ୍କ ନେତୃତ୍ୱରେ ସ୍ୱାଧୀନ ବଙ୍ଗଳା ଦେଶ ଗଠନ ହୋଇଥିଲା ।

ଆଧୁନିକ କାଳର ଇତିହାସରେ ଏହା ଏକ ସ୍ମରଣୀୟ ଘଟଣା । ଅତ୍ୟାଚାରୀ ପାକିସ୍ତାନୀ ସୈନ୍ୟବାହିନୀ ହାତରୁ ବଙ୍ଗଳା ଦେଶକୁ ମୁକ୍ତ କରି ଇନ୍ଦିରା ଗାନ୍ଧୀ ସାରା ବିଶ୍ୱର ସ୍ୱାଧୀନତାପ୍ରେମୀ ଜନ ସାଧାରଣଙ୍କ ଆଗରେ ମହାନ୍ ନେତ୍ରୀ ରୂପରେ ଉଭା ହୋଇଥିଲେ ।

ଏହାପରେ ସେ ଭାରତ ଓ ପାକିସ୍ତାନ ମଧ୍ୟରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କରିଥିଲେ । ଏଥିପାଇଁ ୧୯୭୨ ମସିହାରେ ସେ ସିମଳାଠାରେ ପାକିସ୍ତାନର ପ୍ରଧାନ ରାଷ୍ଟ୍ରନେତା ଜୁଲଫିକର ଅଲ୍ଲି ଭୁଟ୍ଟୋଙ୍କ ସହିତ ଏକ ଚୁକ୍ତି ନାମାରେ ଦସ୍ତଖତ କରିଥିଲେ । ଏହାଫଳରେ ଦୁଇ ଦେଶ ମଧ୍ୟରେ ସୁସଂପର୍କର ବାଟ ଖୋଲିଯାଇଥିଲା ।

## ଜରୁରୀ କାଳୀନ ଅବସ୍ଥା ଘୋଷଣା

୧୯୭୧ ମସିହା ମାର୍ଚ୍ଚ ମାସରେ ଶ୍ରୀମତୀ ଗାନ୍ଧୀ ଶ୍ରୀ ରାଜନାରାୟଣଙ୍କୁ ହରାଇ ରାଏବରେଲୀ ଲୋକସଭା ନିର୍ବାଚନ

ମଣ୍ଡଳୀରୁ ବିଜୟୀ ହୋଇଥିଲେ । କିନ୍ତୁ ଏହି ନିର୍ବାଚନକୁ ଅସିଦ୍ଧ ଘୋଷଣା କରିବା ପାଇଁ ରାଜନାରାୟଣ ଏହ୍ଲାବାଦ ହାଇକୋର୍ଟରେ ଏକ ମକଦ୍ଦମା ଦାଏର୍ କରିଥିଲେ । ଇନ୍ଦିରାଗାନ୍ଧୀଙ୍କ ବିରୋଧରେ ବିଭିନ୍ନ କାରଣମାନ ସେ ଦର୍ଶାଇଥିଲେ । ଏହି ମକଦ୍ଦମାରେ ଇନ୍ଦିରା ହାରିଯାଇଥିଲେ । କିନ୍ତୁ ପ୍ରଧାନମନ୍ତ୍ରୀ ପଦ ଛାଡ଼ି ନ ଥିଲେ ।

ଏହି ସମୟରେ ବିଶିଷ୍ଟ ଗାନ୍ଧୀବାଦୀ ନେତା ଶ୍ରୀ ଜୟପ୍ରକାଶ ନାରାୟଣ ମଧ୍ୟ ଇନ୍ଦିରା ବିରୋଧୀ ହୋଇଉଠିଥିଲେ । ଦେଶରେ ଦେଖାଯାଇଥିବା ଦୁର୍ନୀତି ପାଇଁ ସେ ସରକାରଙ୍କୁ ଦାୟୀ କରି ବିପ୍ଳବ ଆରମ୍ଭ କରିଥିଲେ । ଏହି ବିପ୍ଳବକୁ ସଫଳ କରିବା ପାଇଁ ସେ ପୋଲିସ୍, ସୈନ୍ୟ ବାହିନୀର ଯବାନ୍, ଛାତ୍ର ସମାଜ ଆଦିକୁ ସାମିଲ ହେବା ପାଇଁ ଡାକରା ଦେଇଥିଲେ । ଇନ୍ଦିରା ଏହି ପରିସ୍ଥିତିକୁ ସୁଧାରିବା ପାଇଁ ୧୯୭୫ ମସିହା ଜୁନ୍‌ମାସ ୨୬ ତାରିଖରେ ଜରୁରୀକାଳୀନ ପରିସ୍ଥିତି ଜାରି କରିଥିଲେ । ଇନ୍ଦିରାଙ୍କର ଏହି ନିଷ୍ପତ୍ତି ଜନସାଧାରଣଙ୍କୁ ଅସନ୍ତୁଷ୍ଟ କରିଥିଲା । ଏହା ଦ୍ୱାରା ବିରୋଧୀ ଦଳର ବହୁ ନେତା ଗିରଫ ହୋଇଯାଇଥିଲେ ।

ଦଳୀୟ ନେତାମାନେ କ୍ଷମତାର ଅପବ୍ୟବହାର ଦ୍ୱାରା ଦେଶରେ ଅରାଜକତା ସୃଷ୍ଟି କରିଥିଲେ । ଉଚ୍ଚ ପଦସ୍ଥ କର୍ମଚାରୀମାନେ ଜନସାଧାରଣଙ୍କ ଉପରେ ମନମୁଖୀ ଶାସନ

ଚଳାଉଥିଲେ । ଏଥିପାଇଁ ଇନ୍ଦିରା ଗାନ୍ଧୀ ବହୁ ଭାବରେ ବଦନାମ୍ ହୋଇଯାଇଥିଲେ । ଏ ସବୁ ଖବର କିନ୍ତୁ ଇନ୍ଦିରାଙ୍କ ନିକଟରେ ପହଞ୍ଚିପାରୁ ନଥିଲା । କାରଣ, ସେହି ସମୟରେ ସମ୍ବାଦ ପତ୍ରଗୁଡ଼ିକ ଉପରେ କଟକଣା ଜାରି କରାଯାଇଥିଲା । ଯେତେବେଳେ ଇନ୍ଦିରା ଗାନ୍ଧୀ ଏ ସବୁ ଖବର ଜାଣିଲେ, ସେତେବେଳେ ସେ ଅତ୍ୟନ୍ତ ଦୁଃଖିତ ହୋଇପଡ଼ିଲେ । ଏହା ପରେ ସେ ନିର୍ବାଚନ ଘୋଷଣା କରିଥିଲେ । ବିରୋଧି ନେତାମାନେ ମିଶି 'ଜନତା ଦଳ' ନାମରେ ଗୋଟିଏ ନୂଆ ଦଳ ଗଢ଼ିଥିଲେ ।

ଏହି ଜନତା ଦଳ ୧୯୭୭ ନିର୍ବାଚନରେ ଇନ୍ଦିରାଙ୍କୁ ପରାସ୍ତ କରିଥିଲେ । କେନ୍ଦ୍ରରେ ଜନତାଦଳ ସରକାର ଗଠିତ ହୋଇଥିଲା । ଶ୍ରୀଯୁକ୍ତ ମୋରାରଜୀ ଦେଶାଇ ହୋଇଥିଲେ ଭାରତର ପ୍ରଧାନମନ୍ତ୍ରୀ । ତେବେ ବେଶି ଦିନ ସେମାନେ କ୍ଷମତାରେ ରହି ପାରି ନ ଥିଲେ । ସେମାନଙ୍କର ବିଫଳ ଶାସନ ପୁଣି ଜନସାଧାରଣଙ୍କୁ ଇନ୍ଦିରାଙ୍କ ଆଡ଼କୁ ଟାଣିଆଣିଥିଲା । ଇନ୍ଦିରା ଗାନ୍ଧୀଙ୍କୁ ଦେଶବାସୀ ଠିକ୍‌ଭାବରେ ବୁଝିପାରିଥିଲେ । ତେଣୁ ପୁଣି ୧୯୮୦ ମସିହା ଜାନୁୟାରୀ ୧୪ ତାରିଖ ଦିନ ଇନ୍ଦିରା ଗାନ୍ଧୀ ଚତୁର୍ଥ ଥର ପାଇଁ ଦେଶର ପ୍ରଧାନମନ୍ତ୍ରୀ ଭାବେ ନିର୍ବାଚିତା ହୋଇଥିଲେ ।

ଏହି ବର୍ଷ ତାଙ୍କ ସାନ ପୁଅ ସଂଜୟର ଉଡ଼ାଜାହାଜ ଦୁର୍ଘଟଣାରେ ମୃତ୍ୟୁ ହୋଇଥିଲା । ଇନ୍ଦିରା ଏଥିରେ ଭାଙ୍ଗି

ପଡ଼ିଥିଲେ । ସେ ବହୁ କଷ୍ଟରେ ନିଜକୁ ସମ୍ଭାଳି ପାରିଥିଲେ । ଦେଶସେବା ପାଇଁ ତାଙ୍କୁ ଏ ଦୁଃଖକୁ ମଧ୍ୟ ସହିବାକୁ ପଡ଼ିଥିଲା । ମନକୁ ବୁଝାଇବା ପାଇଁ ସେ ବଡ଼ ପୁଅ ରାଜୀବ ଗାନ୍ଧୀଙ୍କୁ ରାଜନୀତିରେ ପ୍ରବେଶ କରାଇଥିଲେ ।

ଇନ୍ଦିରା ଗାନ୍ଧୀ ତାଙ୍କ ଶାସନ କାଳ ମଧ୍ୟରେ ମନେ ରଖିଲା ଭଳି ଅନେକ କାମ କରିଛନ୍ତି । ତାଙ୍କରି ଚେଷ୍ଟାରେ ସିକିମ୍ ଭାରତରେ ମିଶିଥିଲା । ଏମିତି ବହୁ କାମକରି ସେ ଦେଶକୁ ବିଶ୍ୱଦରବାରରେ ପହଞ୍ଚାଇ ଦେଇଥିଲେ ।

## ଦେଶପାଇଁ ପ୍ରାଣବଳି

ଇନ୍ଦିରା ଗାନ୍ଧୀଙ୍କ ଜୀବନର ଆଦର୍ଶ ଥିଲା ଜାତୀୟ ଏକତା ରକ୍ଷା କରିବା ଓ ଦେଶକୁ ସମୃଦ୍ଧ କରିବା । ସେ ଦୀର୍ଘ ୧୭ ବର୍ଷ ଦେଶକୁ ଚଳାଇଥିଲେ । ନିଜର କଠିନ ସାଧନା, ଅସୀମ ସାହସ ଓ ଆକର୍ଷଣୀୟ ବ୍ୟକ୍ତିତ୍ୱ ଦ୍ୱାରା ସେ ନିଜକୁ ବିଶ୍ୱରେ ପ୍ରତିଷ୍ଠିତ କରି-ପାରିଥିଲେ । କିନ୍ତୁ ପଞ୍ଜାବ ସମସ୍ୟାକୁ ସମାଧାନ କରିବାକୁ ଯାଇ ଇନ୍ଦିରା ନିଜ ଜୀବନକୁ ବଳି ଦେଇଥିଲେ ।

ପଞ୍ଜାବର ଗୋଟିଏ ଦଳ ଅଲଗା ଖଲିସ୍ତାନ ରାଜ୍ୟ ଦାବୀ କରି ଗଣ୍ଡଗୋଳ ଚଳାଇ ରଖିଥିଲେ । ଅମୃତସରର ସୁବର୍ଣ୍ଣ ମନ୍ଦିର

ଥିଲା ସେମାନଙ୍କର ହତିଆର ଜମା କରିବାର ଆଡ୍ଡା । ଇନ୍ଦିରା ଗାନ୍ଧୀ ଏଇଥି ପାଇଁ ସ୍ୱର୍ଣ୍ଣମନ୍ଦିର ଭିତରକୁ ସୈନ୍ୟ ପଠାଇଥିଲେ । କିନ୍ତୁ ଶିଖ୍‌ମାନେ ମନ୍ଦିରରେ ସୈନ୍ୟବାହିନୀ ପ୍ରବେଶକୁ ପସନ୍ଦ କରି ନ ଥିଲେ । ଏହା ପରେ ସେମାନେ ଇନ୍ଦିରାଙ୍କୁ ହଟାଇବା ପାଇଁ ଷଡ଼ଯନ୍ତ୍ର ଆରମ୍ଭ କରିଦେଇଥିଲେ ।

ଶେଷରେ ଇନ୍ଦିରା ନିଜର ଦେହରକ୍ଷୀ ଶିଖ୍ ଯୁବକମାନଙ୍କ ଦ୍ୱାରା ହିଁ ମୃତ୍ୟୁବରଣ କରିଥିଲେ । ସେ ଦିନ ଥିଲା ୧୯୮୪ ମସିହା ଅକ୍ଟୋବର ମାସ ୩୧ ତାରିଖ । ସେ ନିଜର ନିତ୍ୟକର୍ମ ଶେଷକରି ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ଦେଖା କରିବାକୁ ଘରୁ ବାହାରି ଥିଲେ । ଦେହରକ୍ଷୀ ଶିଖ୍ ଯୁବକ ବେଅନ୍ତ ସିଂହ ଓ ସତୱନ୍ତ ସିଂହ ତାଙ୍କ ଉପରକୁ ଗୁଳି ଚଳାଇଥିଲେ । ତାଙ୍କ ଶରୀରରେ ୧୬ଟି ଗୁଳି ବାଜିଥିଲା । ସେ ସେହିଠାରେ ହିଁ ଟଳି ପଡ଼ିଥିଲେ ।

ଏହାର ଠିକ୍ ଦୁଇ ଦିନ ପୂର୍ବରୁ ସେ ଓଡ଼ିଶା ଗସ୍ତରେ ଆସିଥିଲେ । ଓଡ଼ିଶାକୁ ସେ ଭାରି ଭଲ ପାଉଥିଲେ । କଳାହାଣ୍ଡି, ଫୁଲବାଣୀ, କୋରାପୁଟ ଓ କେନ୍ଦୁଝର ପ୍ରଭୃତି ଜିଲ୍ଲାରେ ବସବାସ କରୁଥିବା ଆଦିବାସୀଙ୍କ ପାଖକୁ ସେ ନିଜେ ଯାଇ ସେମାନଙ୍କର ସୁଖ ଦୁଃଖ ବୁଝୁଥିଲେ ।

ମୃତ୍ୟୁ ପୂର୍ବରୁ ସେ ତାଙ୍କର ଶେଷ ଭାଷଣ ଓଡ଼ିଶାରେ ଦେଇଥିଲେ । ଏଥିରେ ଜୀବନର ସମସ୍ତ ଶ୍ରଦ୍ଧା ସେ ଦେଶବାସୀଙ୍କ ପ୍ରତି ଅଜାଡ଼ି ଦେଇଥିଲେ । ଅକ୍ଟୋବର ୩୦ ତାରିଖ ସଂଧ୍ୟାରେ ଭୁବନେଶ୍ୱରର ପ୍ୟାରେଡ୍ ପଡ଼ିଆରେ ଉଦ୍‌ବୋଧନ ଦେଇ ସେ କହିଥିଲେ - ''ଯଦି ଦେଶର ସେବା କରୁ କରୁ ମୋର ଜୀବନ ଚାଲିଯାଏ, ତେବେ ମୁଁ ଗର୍ବ ଅନୁଭବ କରିବି । ମୋର ପ୍ରତ୍ୟେକ ରକ୍ତବିନ୍ଦୁ ଦେଶ ଗଠନ ଓ ଜାତିର ଏକତାକୁ ସୁଦୃଢ଼ କରିବାରେ ସହାୟକ ହେବ, ଏହା ମୋର ଦୃଢ଼ ଆଶା ।''

ଏହା ଥିଲା ଇନ୍ଦିରା ଗାନ୍ଧୀଙ୍କର ଶେଷ ସାଧାରଣ ସଭା ଓ ଶେଷ ଭାଷଣ । ସେ ମରି ସୁଦ୍ଧା ଆଜି ନିଜର ଭଲ କାମ ପାଇଁ କାଳକାଳକୁ ଅମର ହୋଇ ରହିଛନ୍ତି ।

***

